ବିଶ୍ୱସାହିତ୍ୟ ଗ୍ରନ୍ଥମାଳା

# ହରଣଚାଲ





ଗ୍ରନ୍ଥମନ୍ଦିର

ପ୍ରକାଶକ : ମନୋଜ ମହାପାତ୍ର
**ଗ୍ରନ୍ଥମନ୍ଦିର,** ବିନୋଦବିହାରୀ, କଟକ - ୨

ଡି.ଟି.ପି. : ଶ୍ରୀରାମ ଡି.ଟି.ପି. ସେଣ୍ଟର, କଟକ

ମୁଦ୍ରକ : ତପନ କୁମାର ମହାପାତ୍ର
**ଅପ୍‌ଟିମା (ଅଫସେଟ୍) ପ୍ରିଣ୍ଟସ୍,** ସୂତାହାଟ, କଟକ-୧

ପ୍ରଥମ ମୁଦ୍ରଣ : ୧୯୭୨
ପୁନର୍ମୁଦ୍ରଣ : ୨୦୦୦

[illegible] ୦

# ସ'ପରିବାରକୁ ମୋର ଯାତ୍ରାରମ୍ଭ

୧୭୫୧ ମସିହା ଜୁନ୍ ମାସର ଗୋଟିଏ ସକାଳ । ମୁଁ ଇସେନ୍‌ଡିନସ୍ଥ ମୋର ପୈତୃକ ଗୃହର ଦରଜା ଶେଷଥର ପାଇଁ ବନ୍ଦକରି ମୋର ଦୁଃସାହସିକ ଯାତ୍ରା ଆରମ୍ଭକଲି । ସେତେବେଳକୁ ପାହାଡ଼ର ଶିଖରଦେଶରେ ସୂର୍ଯ୍ୟକିରଣ ପଡ଼ିଥାଏ । ଉଦ୍ୟାନରେ ପକ୍ଷୀମାନେ ଗୀତ ଗାଉଥାନ୍ତି ଓ ଉପତ୍ୟକାର ବକ୍ଷ ଉପରେ ରାତିରେ ଜମିଥିବା କୁହୁଡ଼ି ଉପରକୁ ଉଠିବାପାଇଁ ଆରମ୍ଭ କରିଥାଏ ।

ଇସେନ୍‌ଡ଼ିନ୍‌ର ଧର୍ମଯାଜକ ମି.କେମ୍ପବେଲ୍ ଉଦ୍ୟାନର ଫାଟକ ପାଖରେ ମୋତେ ଅପେକ୍ଷା କରିଥାନ୍ତି । ମୋତେ ଦେଖି ସେ ମୋର ହାତ ଧରିପକାଇଲେ । କହିଲେ, ''ଆଛା ଡେଭିଡ୍, ତୁମକୁ ବିଦାୟ ଦେବାକୁ ନଦୀ ପର୍ଯ୍ୟନ୍ତ ତୁମ ସାଙ୍ଗରେ ଯିବି ।'' ଆମେ ଦୁହେଁ ନୀରବରେ ଚାଲିଥାଉଁ । କିଛି ସମୟ ପରେ ନୀରବତା ଭାଙ୍ଗି ସେ ପଚାରିଲେ, ''ଇସେନ୍‌ଡିନ୍ ଛାଡ଼ି ଚାଲିଯିବାକୁ ତୁମକୁ କ'ଣ ଦୁଃଖ ଲାଗୁନାହିଁ ?'' କହିଲି, ''ଏ ପ୍ରଶ୍ନର ଉତ୍ତର ଦେଇପାରନ୍ତି ଯଦି କେଉଁଠାକୁ ଯାଉଛି ମୁଁ ଜାଣିଥାନ୍ତି । ଇସେନ୍‌ତିନ୍ ପ୍ରକୃତରେ ଏକ ସୁନ୍ଦର ସ୍ଥାନ । ତେବେ ପିତାମାତାଙ୍କର ମୃତ୍ୟୁ ପରେ ଏ ସ୍ଥାନର ଆକର୍ଷଣ କମିଯାଇଛି ନିଶ୍ଚୟ । ମୁଁ ଏପରି ଏକ ସ୍ଥାନକୁ ଯିବାକୁ ଚାହୁଁଛି ଯେଉଁଠାରେ ଧନସମ୍ପଦ ଲାଭକରି ସୁଖରେ ବଞ୍ଚିପାରିବି ।''

ମି. କେମ୍ପବେଲ୍ ମୋ କଥାକୁ ସମର୍ଥନ କଲେ । କହିଲେ– ''ମୁଁ ତୁମକୁ ତୁମର ଧନସମ୍ପଦ ବିଷୟରେ କିଛି କହିବି । ତୁମର ପିତା ମୃତ୍ୟୁଶଯ୍ୟାରେ ପଡ଼ିଥିବାବେଳେ ମୋତେ ଖଣ୍ଡିଏ ଚିଠି ଦେଇ କହିଥିଲେ, 'ମୁଁ ମରିଯିବା ପରେ ମୋର ପୁଅକୁ ଏହି ଚିଠିଖଣ୍ଡି ଦେବ ଏବଂ କ୍ରେମଣ୍ଡ ନିକଟରେ ଥିବା ସ'ପରିବାରକୁ ତାକୁ ପଠାଇଦେବ । ତାହାହିଁ ମୋର ନିଜ ଘର । ମୋ ପୁଅର ସ୍ୱଭାବ ଭଲ । ସେ ଖୁବ୍ ଯତ୍ନଶୀଳ ପିଲା । ତେଣୁ ସେ ସେଠାରେ ବେଶ୍ ଆଦୃତ ହେବ ବୋଲି ମୋର ଆଶା ।''

''ସ'ପରିବାର ? ବାପା କ'ଣ ତାହାହେଲେ ସ'ପରିବାରର ଲୋକ ଥିଲେ ?''– ଉତ୍କଣ୍ଠିତ ହୋଇ ପଚାରିଲି । ମି. କେମ୍ପବେଲ୍ କହିଲେ, ''ସେକଥା ମୁଁ ଜାଣେନାହିଁ; କିନ୍ତୁ ସେ ପରିବାରର ନାମ ତୁମ ପରିବାରର ନାମ ପରି । ଏହା ଏକ ପୁରାତନ ଖାନ୍ଦାନ୍ ପରିବାର; କିନ୍ତୁ ବର୍ତ୍ତମାନ ଏହା ପୂର୍ବପରି ବିଭବଶାଳୀ ନୁହେଁ । ତୁମ ପିତା ଥିଲେ ଖୁବ୍ ଭଦ୍ର ଏବଂ ତାଙ୍କ ଭଳି ଶିକ୍ଷକ ଖୁବ୍ ବିରଳ ।''

ପାଦ୍ରି ମୋତେ ଯେଉଁ ଚିଠିଟି ଦେଲେ ତା ଉପରେ ଲେଖାଥିଲା– ଏ ଚିଠି ମୋର ପୁତ୍ର ଡେଭିଡ୍ ବେଲ୍‌ଫାଓ୍ୱାର୍ କର୍ତ୍ତୃକ ସ'ପରିବାରର ଶ୍ରୀଯୁକ୍ତ ଇବେନିଜାର୍ ବେଲ୍‌ଫାଓ୍ୱାରଙ୍କୁ ଦିଆଯିବ ।

ଏ ପ୍ରକାର ଆକସ୍ମିକ ଖବର ମୋ ମନରେ ଶିହରଣ ଜାତକଲା । ମୋର ସତରବର୍ଷ ବୟସ ମଧ୍ୟରେ ମୋର ପରିବାର ସମ୍ବନ୍ଧରେ ମୋତେ କେହି କିଛି କହିନଥିଲେ ।

ମୁଁ କହିଲି, "ମି. କେମ୍ପବେଲ୍, ଆପଣ ଯଦି ମୋ ସ୍ଥାନରେ ଥାଆନ୍ତେ ତା'ହେଲେ ଆପଣ କ'ଣ ସେଠାକୁ ଯାଇଥାନ୍ତେ ?"

ଧର୍ମଯାଜକ କହିଲେ, "ନିଶ୍ଚୟ, ମୁଁ ସଙ୍ଗେ ସଙ୍ଗେ ଯାଇଥାନ୍ତି । ତୁମପରି ଟାଣୁଆ ପିଲା ପକ୍ଷରେ କ୍ରେମଣ୍ଡରେ ଯାଇ ପହଞ୍ଚିବାକୁ ଦିନ ଦୁଇଟା ଲାଗିବ । ଯଦି ତୁମର ମଧୁର ସମ୍ପର୍କ ସତ୍ତ୍ୱେ ସେ ଘରେ ତୁମକୁ ସ୍ଥାନ ନମିଳେ ତେବେ ଫେରି ଆସିବାକୁ ତୁମକୁ ଆଉ ଦୁଇଦିନ ସମୟ ଲାଗିବ । ସେଭଳି ପରିସ୍ଥିତିରେ ମୋ ଘରର ଦରଜା ତୁମପାଇଁ ଉନ୍ମୁକ୍ତ ରହିଥିବ । ତେବେ ତୁମେ ମୋତେ ଛାଡ଼ି ଚାଲିଯିବା ପୂର୍ବରୁ କେତେଗୁଡ଼ାଏ ସାଂସାରିକ ବିପଦ ପ୍ରତି ତୁମକୁ ସାବଧାନ କରିଦେବା ମୋର କର୍ତ୍ତବ୍ୟ ।"

ରାଜପଥ ପାର୍ଶ୍ୱରେ ଥିବା ଏକ ବଡ଼ ପଥର ଉପରେ ଆମେଦୁହେଁ ବସିଲୁ । ସୂର୍ଯ୍ୟ ସେତେବେଳକୁ ମୁଣ୍ଡ ଉପରକୁ ଉଠିଯାଇଥାଆନ୍ତି । ଯେଉଁସବୁ ପାପ ବିଷୟରେ ମୁଁ ଆଗରୁ କେବେହେଲେ ଶୁଣିନଥିଲି ସେହିପରି କେତେଗୁଡ଼ିଏ ପାପ ନ କରିବା ପାଇଁ ସେ ମୋତେ ସାବଧାନ କରିଦେଲେ । ମନୋନିବେଶ କରି ପ୍ରାର୍ଥନା କରିବା ଏବଂ ନିଷ୍ଠାର ସହିତ ବାଇବେଲ୍ ପାଠକରିବା ପାଇଁ ମୋତେ ବାଧ୍ୟକରିଥିଲେ । ତପୂରେ ଏକ ନୂତନ ପରିବାରରେ ଚଳିବା ପାଇଁ ମୋର ଆଚରଣ କିପରି ହେବା ବାଞ୍ଛନୀୟ ସେ କଥା ବୁଝାଇଲେ । ସେ କହିଲେ– "ମନେରଖ ଡେଭିଡ୍, ତୁମର ଚାଲିଚଳନ ଆମକୁ ଯେପରି ଅପମାନିତ ନକରୁ । ଯଥାସମ୍ଭବ ସାବଧାନତାରେ ଚଳୁଥିବ ।"

ମୁଁ ତାଙ୍କ କଥା ଅନୁସାରେ ଚଳିବା ପାଇଁ ପ୍ରତିଶ୍ରୁତି ଦେବା ପରେ ସେ ତାଙ୍କ ବସିବା ଜାଗାରୁ ଉଠିଲେ ଓ ମୁଣ୍ଡରୁ ଟୋପିଟା କାଢ଼ି ଅଳ୍ପ ସମୟ ପାଇଁ ପ୍ରାର୍ଥନା କଲେ । ତାପରେ ହଠାତ୍ ମୋତେ ତାଙ୍କ ବାହୁ-ଯୁଗଳର ଆବେଷ୍ଟନୀ ଭିତରେ ଆଲିଙ୍ଗନ କଲେ । ଏହା ପରେ ମୁହଁ ଫେରାଇ ଦ୍ରୁତ ଗତିରେ ଫେରିଗଲେ । ମୋ ଆଖିକୁ ଦେଖାଯାଉଥିବା ପର୍ଯ୍ୟନ୍ତ ତାଙ୍କ ଆଡ଼କୁ ମୁଁ ଚାହିଁରହିଲି । ସେ ପଛକୁ ଫେରି ଥରଟିଏ ବି ଚାହୁଁନଥାନ୍ତି । ମୋତେ ଜଣାଯାଉଥାଏ, ସେ ଯେପରି ମୋର ବିଦାୟରେ ଅତ୍ୟନ୍ତ ବ୍ୟଥାତୁର । କିନ୍ତୁ ମୁଁ ଖୁବ୍ ଆନନ୍ଦ ଅନୁଭବ କରୁଥାଏ । ଏକ କ୍ଷୁଦ୍ର ଗ୍ରାମ ଛାଡ଼ି ଧନୀ ସମ୍ମାନାସ୍ପଦ ଭଦ୍ରବ୍ୟକ୍ତିମାନଙ୍କ ଗହଣରେ ବାସ କରିବାର ସୁନେଲି ଆଶାରେ ମୁଁ ଆତ୍ମହରା ହୋଇପଡୁଥାଏ । ତଥାପି ଭାବୁଥାଏ– ମୁଁ ପ୍ରକୃତରେ କେତେ

ଅକୃତଜ୍ଞ ? ମୋର ପୁରାତନ ବନ୍ଧୁ ଏବଂ ସେମାନଙ୍କ ସାହାଯ୍ୟ ସହାନୁଭୂତିକୁ ମୁଁ କେତେ ଚଞ୍ଚଳ ପାସୋରିଦେଉଛି !

ମୁଁ ମୋର ବୁକ୍ଚୁଲାଟିକୁ ହାତରେ ଧରିଲି । ନଦୀ ପାରହୋଇ ଆରପାଖରେ ଥିବା ପାହାଡ଼ ଉପରକୁ ଉଠିଲି । ବୁଦୁବୁଦୁକିଆ ଜଙ୍ଗଲ ଭିତରେ ରାସ୍ତା ଲମ୍ବିଯାଇଛି । ସେହିଠାରେ ପହଞ୍ଚି ଇସେନ୍‌ଡ଼ିନ୍‌ର ଗିର୍ଜା ଓ ତାର ଚାରିପଟେ ଘେରି ରହିଥିବା ବୃକ୍ଷରାଜିକୁ ଶେଷଥର ପାଇଁ ଦେଖିନେଲି । ସେହିଠାରେ ମୋର ମୃତ ପିତାମାତାଙ୍କୁ କବର ଦିଆଯାଇଥିଲା ।

# ମୋର ଯାତ୍ରାର ସମାପ୍ତି

ଦୁଇଦିନ ପରେ ଏକ ପାହାଡ଼ ଉପରୁ ଗୋଟିଏ ସହର ମୋ ଆଖିରେ ପଡ଼ିଲା । ସହରଟି ସମୁଦ୍ର ଆଡ଼କୁ ନିମ୍ନମୁଖୀ ହୋଇ ଲମ୍ବିଯାଇଛି । ଏହାର ମଧ୍ୟ ସ୍ଥଳରେ ଏକ ଅନୁଚ୍ଚ ପାହାଡ଼ ଓ ତାର ଶିଖରରେ ଏକ ଦୁର୍ଗ ଅଛି । ସହର ନିକଟରେ ବହିଯାଉଥିବା ନଦୀ ଗର୍ଭରେ କେତେଗୁଡ଼ିଏ ଜାହାଜ ଗତିଶୀଳ, ପୁଣି ଅନ୍ୟ କେତେଗୁଡ଼ିଏ ଜାହାଜ ନଙ୍ଗର ପକାଇ ସ୍ଥିର ଏବଂ ନିଶ୍ଚଳ ।

ଅଳ୍ପ କିଛି ଦୂର ଅଗ୍ରସର ହେବା ପରେ ମୁଁ ଜାଣିଲି ଯେ ମୁଁ କ୍ରେମଣ୍ଡ ସହରରେ ପହଞ୍ଚିଯାଇଛି । ତତ୍ପରେ ସ'ପରିବାର ବାସଗୃହର ଅବସ୍ଥିତି ସମ୍ବନ୍ଧରେ ବିଭିନ୍ନ ଲୋକଙ୍କୁ ପଚାରିଲି; କିନ୍ତୁ ମୋର ପ୍ରଶ୍ନରେ ପ୍ରତ୍ୟେକେ ଆଶ୍ଚର୍ଯ୍ୟାନ୍ୱିତ ହେଲାପରି ବୋଧହେଲା । ପ୍ରଥମେ ପ୍ରଥମେ ଭାବିଲି ମୋ ଭଳି ଜଣେ ମଫସଲି ଲୋକ ଏତେ ବଡ଼ ଘରକୁ ଯେ ଯାଇପାରେ ଏହା ହିଁ ହୁଏତ ସେମାନଙ୍କର ଆଶ୍ଚର୍ଯ୍ୟର କାରଣ ହୋଇଥିବ । ମାତ୍ର ଅନେକଙ୍କଠାରେ ସମାନଭାବ ଦେଖିବା ପରେ ଭାବିଲି ହୁଏତ ସ'ପରିବାର ବିଷୟରେ ନିଶ୍ଚୟ କିଛି ରହସ୍ୟ ରହିଛି ।

ଜଣେ ଚାଷୀ ଗାଡ଼ିରେ ବସି ରାସ୍ତାରେ ଯାଉଥାଏ । ତାକୁ ଦେଖି ସ'ପରିବାରର ନାମ ସେ କେବେ ଶୁଣିଛି କି ନାହିଁ ପଚାରିଲା । ସେ ମୋ ପ୍ରଶ୍ନରେ 'ହଁ' ଭରିବା ସଙ୍ଗେ ସଙ୍ଗେ ମୁଁ କାହିଁକି ତାହା ପଚାରିଲି ବୋଲି ଜାଣିବାକୁ ଚାହିଁଲା ।

''ଏହା କ'ଣ ଗୋଟିଏ ବଡ଼ ଘର ?''– ମୁଁ ପଚାରିଲି । ସେ କହିଲା– ''ପ୍ରକୃତରେ ଘରଟି ଖୁବ୍ ବଡ଼ ।'' କୌତୂହଳୀ ହୋଇ ମୁଁ ପଚାରିଲି, ''ଆଚ୍ଛା, ସେ ଘରେ ରହୁଥିବା ଲୋକଙ୍କ ବିଷୟରେ ତୁମେ କିଛି ଜାଣ କି ?''

ସେ କହିଲା, ''ଲୋକ ? ତୁମେ କ'ଣ ପାଗଳ ? ପ୍ରକୃତ ମଣିଷ କହିଲେ ଆମେ ଯାହା ବୁଝୁ, ସେପରି ଜଣେହେଲେ କେହି ସେଠାରେ ନାହାନ୍ତି ।''

ଚାଷୀର ଉତ୍ତରରେ ବିସ୍ମିତ ହେଲି । ପଚାରିଲି, ''ମି. ଇବେନ୍‌ଜାର୍‌ଙ୍କ ବିଷୟରେ କିଛି ଜାଣ କି ?''

"ହଁ, ସେ ସେହି ଘରର କର୍ତ୍ତା ସତ, ତେବେ ତାଙ୍କୁ ସାକ୍ଷାତ୍ କରିବା ମୂଳରେ ତୁମର ଉଦ୍ଦେଶ୍ୟ କ'ଣ ?"

ବିନମ୍ର ଭାବରେ କହିଲି, "ମୁଁ ଶୁଣିବାକୁ ପାଇଲି ତାଙ୍କ ପାଖକୁ ଗଲେ କୌଣସି ନା କୌଣସି କାମ କରିବାର ସୁବିଧା ମିଳିବ ।"

ମୋ କଥା ଶୁଣି ସେ ଉପଦେଶ ଦେବା ସ୍ୱରରେ କହିଲା, "ତୁମେ ନିରୀହ ଏବଂ ଉତ୍ତମ ସ୍ୱଭାବର ପିଲାପରି ଜଣାପଡୁଛ । ମୋର କଥା ମାନି ସ'ପରିବାରଠାରୁ ନିଜକୁ ଦୂରରେ ରଖିବାକୁ ଚେଷ୍ଟାକର ।"

ଇସେନ୍‌ଡ଼ିନ୍‌ଠାରୁ ଅଳ୍ପ କିଛି ଦୂର ଆସିବା ପରେ ଏକଥା ଶୁଣିଥିଲେ ମୁଁ ନିଶ୍ଚୟ ଘରକୁ ଫେରିଯାଇଥାନ୍ତି; କିନ୍ତୁ ଯେତେବେଳେ ଏତେ ଦୂର ଆସିସାରିଲିଣି ଯେକୌଣସିମତେ ଗନ୍ତବ୍ୟ ସ୍ଥଳରେ ପହଞ୍ଚିବାକୁ ପଡ଼ିବ । ମୁଁ ବିଚଳିତ ନହୋଇ ଧୀରେ ଧୀରେ ଅଗ୍ରସର ହେଲି ।

ସନ୍ଧ୍ୟା ଆଗତ ପ୍ରାୟ । ଏହି ସମୟରେ ଜଣେ ମୋଟୀ ଓ କାଳୀ ସ୍ତ୍ରୀଲୋକ ପାହାଡ଼ ତଳକୁ ଓହ୍ଲାଇ ଆସୁଥିବାର ଦେଖିଲି । ତାକୁ ସ'ପରିବାରକୁ ଯିବାପାଇଁ ରାସ୍ତା ବିଷୟରେ ପଚାରିଲି । ସେ ବୁଲିପଡ଼ି ମୋତେ ଗୋଟିଏ ପାହାଡ଼ ଉପରକୁ ଯିବାକୁ ନିର୍ଦ୍ଦେଶଦେଲା ଏବଂ ତା ତଳକୁ ଥିବା ଉପତ୍ୟକାର ପାଦ ଦେଶରେ ଥିବା ଗୋଟିଏ ସୁବୃହତ୍ ଅଟ୍ଟାଳିକା ଦେଖାଇଦେଲା । ତାର ନିର୍ଦ୍ଦେଶ ମାନି ସେଆଡ଼କୁ ଗଲି । ସେ ସ୍ତ୍ରୀଟି ମଧ୍ୟ ମୋତେ ଅନୁସରଣକଲା । ଦେଖିଲି ମୋର ଉଦ୍ଦିଷ୍ଟ ଘରଟି ଭଗ୍ନୋନ୍ମୁଖ ଅବସ୍ଥାରେ ଦଣ୍ଡାୟମାନ । ଘର ନିକଟକୁ ରାସ୍ତା ନଥାଏ ଓ ଘରର ଧୂମନଳୀରୁ ଧୂମ ନିର୍ଗତ ହେଉନଥାଏ । ଏହା ଦେଖି ମୋର ମନ ବିଷାଦଗ୍ରସ୍ତ ହେଲା ।

"ଏହାହିଁ କ'ଣ ସ'ପରିବାରର ଅଟ୍ଟାଳିକା ?"– ମୁଁ ବଡ଼ପାଟିରେ ପଚାରିଲି । ଘୃଣାରେ ସେହି ସ୍ତ୍ରୀଟିର ଭ୍ରୁକୁଞ୍ଚିତ ହେଲା । ଉଚ୍ଚକଣ୍ଠରେ କହିଲା, "ହଁ, ସେଇଟା ସ'ପରିବାରର ଅଟ୍ଟାଳିକା ।" ଏହାପରେ ସେ ପାହାଡ଼ ତଳକୁ ଚାଲିଗଲା ।

କିପରି ଏକ ଅଜଣା ଭୟରେ ମୋର ଲୋମ ଟାଙ୍କୁରିଉଠୁଥାଏ । ସେହି ସମୟରେ ଲୋକଙ୍କ ମନରେ ଡାଆଣୀ, ଚିରୁଗୁଣୀ ବିଶ୍ୱାସ ବଦ୍ଧମୂଳ ହୋଇ ରହିଥାଏ । ଅଭିଶାପକୁ ସମସ୍ତେ ଭୟକରୁଥାନ୍ତି । ଅତ୍ୟଧିକ ଭୟଯୋଗୁଁ ମୋର ଗୋଡ଼ ଦୁଇଟି ବଳହୀନ ହୋଇପଡ଼ିଥାଏ । ଥକ୍କା ହୋଇ ବସିପଡ଼ିଲି ଏବଂ ସ'ପରିବାରର ଘର ଆଡ଼କୁ ଚାହିଁଲି । ପଲ୍ଲୀ ଅଞ୍ଚଳ ଆଡ଼କୁ ଯେତେ ବେଶି ଚାହୁଁଥାଏ ମୋତେ ସେତେ ଆନନ୍ଦ ଲାଗୁଥାଏ । ହର୍ଥନ ବୁଦାଗୁଡ଼ାକ ପୁଷ୍ପାଚ୍ଛାଦିତ ହୋଇଥାଏ । ପଲ ପଲ ମେଣ୍ଢା ପଡ଼ିଆରେ ଚରୁଥାନ୍ତି । ଏହି ସୁନ୍ଦର ପରିବେଷ୍ଟନୀର ମଧ୍ୟସ୍ଥଳରେ ଥାଇ ଭଗ୍ନୋନ୍ମୁଖ ଘରଟି ମୋ ଆଖିକୁ ଆଦୌ ଭଲଲାଗୁନଥାଏ ।

ସେତେବେଳକୁ ସୂର୍ଯ୍ୟ ପଶ୍ଚିମ ଦିଗ୍‌ବଳୟ ପଛରେ ଲୁଚିଗଲେଣି । ଦେଖିଲି ଏକ କ୍ଷୀଣ ଧୂମ କୁଣ୍ଡଳୀ ସେହି ଘରର ଧୂମନଳୀ ବାଟେ ନିର୍ଗତହୋଇ ଲୋହିତ

ଆକାଶ ଭିତରେ ଲୁଚିଯାଉଛି । ତାହା ଦେଖି ଜାଣିଲି ସେ ଘରେ ଖାଦ୍ୟ ଅଛି, ଅଗ୍ନି ଅଛି ଏବଂ ଜଣେ କେହି ବ୍ୟକ୍ତି ଅଛି । ଏତିକି ଜାଣିବା ପରେ ମୁଁ ଅବଶ୍ୟ କିଞ୍ଚିତ ଆଶ୍ୱସ୍ତହେଲି ।

ଗୋଟିଏ ନିତାନ୍ତ ସଂକୀର୍ଣ୍ଣ ରାସ୍ତା ଦେଇ ମୁଁ ସେହି ଘର ଆଡ଼କୁ ଗଲି । ଘର ନିକଟରେ ପହଞ୍ଚିବାବେଳକୁ ରାତ୍ରିର ଅନ୍ଧକାର ଜମାଟ ବାନ୍ଧି ଆସୁଥାଏ । ନିମ୍ନସ୍ଥ ତିନୋଟି ବାତାୟନ ଦେଇ ଜଳୁଥିବା ଅଗ୍ନିର ଆଲୋକ ବେଶ୍ ଭଲଭାବରେ ଦେଖାଯାଉଥାଏ । ଭାବିଲି– ଏହାହିଁ କ'ଣ ସେହି ଅଟ୍ଟାଳିକା ଯାହା ଦେଖିବା ପାଇଁ ମୁଁ ଆସିଥିଲି ? ଏହା ଭିତରେ ମୁଁ କ'ଣ ସତରେ ନୂତନ ବନ୍ଧୁର ସନ୍ଧାନ ପାଇ ମୋର ଭାଗ୍ୟ ଗଠନ କରିପାରିବି ?

ଘର ଭିତରେ କେହି ଜଣେ ଚଳପ୍ରଚଳ ହେଉଥିବାର ଶବ୍ଦ ମୋ କାନରେ ବାଜିଲା; କିନ୍ତୁ କାହାରି କଣ୍ଠସ୍ୱର ଶୁଣିଲିନାହିଁ । ଦରଜାରେ ଥରେ ଆଘାତ କଲି ଓ କିଛିସମୟ ପାଇଁ ଛିଡ଼ାରହି ଅପେକ୍ଷାକଲି । ଉଡ଼ନ୍ତା ବାଦୁଡ଼ିଙ୍କ ଶବ୍ଦ ଭିନ୍ନ ଅନ୍ୟ କାହାରି ଚଳପ୍ରଚଳ ହେବାର ଶବ୍ଦ ପାଇଲିନାହିଁ । ତେଣୁ ପୁଣି ଥରେ ଦରଜାରେ ଆଘାତକରି କାନ ଡେରିଲି । ଭିତରେ ଥିବା ଘଣ୍ଟାର ଟିକ୍ ଟିକ୍ ଶବ୍ଦ ମୋ କାନରେ ବାଜିଲା; କିନ୍ତୁ କୌଣସି ମଣିଷର ସ୍ୱର ତଥାପି ଶୁଣାଗଲାନାହିଁ ।

ଏଥର ମନରେ ରାଗ ଜାତହେଲା । ତେଣୁ ଦରଜା ଉପରେ ଗୋଇଠା ଓ ବିଧା ଆଘାତକଲି ଏବଂ ମି.ବେଲ୍‌ଫାଓ୍ୱାରଙ୍କ ନାମ ଧରି ଖୁବ୍ ଜୋର୍‌ରେ ଡାକିଲି । ଏହି ସମୟରେ ମୋର ମୁଣ୍ଡ ଉପରେ ଥିବା ଝରକାରେ ଜଣେ କେହି କାଶିବାର ଶବ୍ଦ ଶୁଣିଲି । ଉପରକୁ ଚାହିଁ ଜଣେ ଲୋକର ମୁଣ୍ଡଟି ମାତ୍ର ଦେଖିବାକୁ ପାଇଲି ଏବଂ ତା ସହିତ ଗୋଟିଏ ବନ୍ଧୁକର ଅଗ୍ରଭାଗ ମଧ୍ୟ । ଭିତରୁ ଶୁଣାଗଲା, ''ଏହା ଭିତରେ ଗୁଳି ଭର୍ତ୍ତିହୋଇଛି ।''

ମୁଁ କହିଲି, ''ମୁଁ ସ'ପରିବାରର ମି: ଇବେନ୍‌ଜାର୍ ବେଲ୍‌ଫାଓ୍ୱାର୍‌କୁ ଚିଠିଟିଏ ଦେବାପାଇଁ ଆସିଛି ।''

ବନ୍ଧୁକଧାରୀ ପଚାରିଲା– ଚିଠି କିଏ ପଠାଇଛି ?

–''ମୁଁ କାହିଁକି ଆପଣଙ୍କୁ ସେ କଥା କହିବି ?''

ଭିତରୁ ଉତ୍ତର ଆସିଲା, ''ତା'ହେଲେ ଚିଠିଟି ଦୁଆରବନ୍ଧ ଉପରେ ରଖିଦେଇ ତୁମେ ଚାଲିଯାଅ ।''

ଉଚ୍ଚସ୍ୱରରେ କହିଲି, ''ମୁଁ ନିଶ୍ଚୟ ଏହା ମି.ବେଲ୍‌ଫାଓ୍ୱାର୍‌କୁ ଦେବି, କାରଣ ତାଙ୍କୁହିଁ ଦେବା ସକାଶେ ମୋତେ କୁହାଯାଇଛି । ଏ ଚିଠିଟି ମୋର ପରିଚୟପତ୍ର ।''

ପ୍ରାୟ ମିନିଟିଏ ପରେ ପୁଣି ପ୍ରଶ୍ନ ହେଲା, ''ତୁମେ କିଏ ?''

କହିଲି, ''ମୋର ନିଜ ନାମ କହିବାକୁ ମୁଁ ଲଜ୍ଜିତ ନୁହେଁ । ଲୋକେ ମୋତେ ଡେଭିଡ୍ ବେଲ୍‌ଫାଓ୍ୱାର୍ ବୋଲି ଡାକନ୍ତି ।''

କିଛି ସମୟର ନୀରବତା ପରେ ସମ୍ପୂର୍ଣ୍ଣ ଭିନ୍ନ ପ୍ରକାର ସ୍ୱରରେ ମୋତେ ପୁଣି ପ୍ରଶ୍ନ ହେଲା, ''ତୁମ ବାପା କ'ଣ ମୃତ ?'' ଏ ପ୍ରଶ୍ନ ଶୁଣି ମୁଁ ଏତେ ବିସ୍ମିତ ହେଲି ଯେ କିଛି ଉତ୍ତର ଦେଇପାରିଲି ନାହିଁ । ଭିତରୁ ସେ ବ୍ୟକ୍ତି ପୁଣି କହିବାକୁ ଲାଗିଲେ, ''ହଁ ସେ ଯେ ମୃତ ଏହା ନିଃସନ୍ଦେହ ଏବଂ ସେଥିପାଇଁ ତୁମେ ଆଜି ମୋର ଦ୍ୱାରସ୍ଥ ହୋଇଛ ।''

ତା'ପରେ ପୁଣି କିଛି ସମୟ ପାଇଁ ନୀରବତା ରାଜତ୍ୱ କଲା । ଭିତରୁ ସେ ଶେଷରେ କହିଲେ, ''ଆଚ୍ଛା, ଭଲକଥା, ଦରଜା ଖୋଲି ଦେଉଛ, ଆସ ।'' ଏହାକହି ସେ ଝରକା ପାଖରୁ ଅନ୍ତର୍ହିତ ହେଲେ ।

# ମୁଁ ମୋର ଖୁଡୁତାଙ୍କୁ ଭେଟିଲି

ଚାବି ଖୋଲାଯିବାର ଶବ୍ଦ ପାଇଲି ଏବଂ ପରେ ପରେ ଆସ୍ତେ ଦରଜାଟି ଖୋଲିଗଲା । ମୁଁ ଭିତରକୁ ପ୍ରବେଶକରିବା ସଙ୍ଗେ ସଙ୍ଗେ ମୋ ପଛରେ ଦରଜା ବନ୍ଦକରିଦିଆଗଲା । ଭିତରେ ଚାରିଆଡ଼ ସମ୍ପୂର୍ଣ୍ଣ ଅନ୍ଧକାରଚ୍ଛନ୍ନ । ସେହି ଅପରିଚିତ କଣ୍ଠରୁ ଶୁଣିଲି, ''ରୋଷାଇଘର ଭିତରକୁ ଯାଅ; କିନ୍ତୁ କିଛି ଛୁଇଁବ ନାହିଁ ।'' ମୁଁ ସେହି ଅନ୍ଧକାର ଭିତର ଦେଇ ଅଗ୍ରସର ହେଲି ଏବଂ ରୋଷାଇ ଘର ଭିତରେ ପ୍ରବେଶକଲି ।

କୋଠରି ଭିତରେ ନିଆଁ ଜଳୁଥାଏ । ସେହି ଆଲୋକରେ ମୁଁ କୋଠରିଟିକୁ ଯେଉଁଭଳି ନିରାଡ଼ମ୍ବର ଥିବାର ଦେଖିଲି ସେଭଳି ନିରାଡ଼ମ୍ବର କୋଠରି ମୁଁ ଆଗରୁ କେବେହେଲେ ଦେଖିନଥିଲି । ଏକ ଥାକରେ ଅଧଡ଼ର୍ଜନ ଥାଳିଆ ମାତ୍ର ରଖାଯାଇଥାଏ । ଭୋଜନ ପାଇଁ ଟେବୁଲଟିଏ ପଡ଼ିଥାଏ । ତାହା ଉପରେ ପୋରିଜ୍ ପୂର୍ଣ୍ଣ ପାତ୍ରଟିଏ ଏବଂ ଏକ କପ୍ ବିଅର୍ ରଖାଯାଇଛି । କାନ୍ଥ ଧାରରେ କେତେଗୁଡ଼ିଏ ଚାବିଦିଆ ବାକ୍ସ ଓ କୋଣରେ ଥିବା ଗୋଟିଏ ବାସନକୁସନରଖା ଆଲମିରା ଉପରେ ଏକ ପ୍ରକାଣ୍ଡ ଚାବି ବ୍ୟତୀତ କୋଠରିଟି ଶୂନ୍ୟ ।

ସାମ୍ନା ଦରଜା ବନ୍ଦକରି ସେ ଲୋକଜଣକ ମୋ ପାଖକୁ ଆସିଲେ । ତାଙ୍କର ବୟସ ପଚାଶରୁ ସତୁରି ଭିତରେ ହେବ । ଆକାର ଛୋଟ । ଶରୀରର ମଧ୍ୟଭାଗ ସମ୍ମୁଖକୁ ନଇଁଯାଇଛି । ମୁଣ୍ଡରେ ଏକ ପଶମ ନିର୍ମିତ ଟୋପି ଓ ଦେହରେ ନୈଶ ପୋଷାକ । ଦୀର୍ଘଦିନ ଧରି ସେ ଖିଅର ହୋଇନଥାନ୍ତି । ମୋତେ ସବୁଠାରୁ ବେଶି ଅଡୁଆ ଲାଗୁଥାଏ ତାଙ୍କର ଚାହାଣି । ସେ ମୋତେ ହିଁ କେବଳ ଚାହୁଁଥାନ୍ତି, ଅଥଚ ମୋ ମୁହଁକୁ ସିଧା ଚାହୁଁନଥାନ୍ତି । ମୋତେ ଜଣାଯାଉଥାଏ, ସେ ଯେପରି ସେଠାକାର ଜଣେ ବୃଦ୍ଧ ଅକର୍ମଣ୍ୟ ଚାକର, ଯାହାଙ୍କ ଉପରେ ସେହି ଘରର ଦାୟିତ୍ୱ ନ୍ୟସ୍ତ

ଅଛି । ସେ ପଚାରିଲେ, ''ତୁମକୁ ଭୋକଲାଗୁଛି ? ସେହି ପାତ୍ରରେ ଯେଉଁ ଖାଦ୍ୟ ଅଛି ତୁମେ ଖାଇପାର ।'' କହିଲି, ''ସେ ଖାଦ୍ୟ ଆପଣଙ୍କ ପାଇଁ ଅଛି ବୋଲି ମୁଁ ଭାବୁଛି ।'' ସେ କହିଲେ, ''ମୁଁ ଖାଇବାକୁ ଚାହୁଁନାହିଁ । ବିଅର୍‌ତକ ପିଇଦେଲେ ମୋର ଚଳିଯିବ ।'' ସେ ଅଧକପ୍ ବିଅର ପିଇଦେଲେ । ତାପରେ ହାତ ବଢ଼ାଇ ମୋତେ ଚିଠିଟି ମାଗିଲେ । ମୁଁ ତାଙ୍କୁ କହିଲି, ''ଚିଠିଟି ମି: ବେଲ୍‌ଫାଓ୍ୱାର୍‌ଙ୍କ ପାଇଁ ଉଦ୍ଦିଷ୍ଟ ।''

ସେ କହିଲେ, ''ମୁଁ କିଏ ବୋଲି ତୁମେ ଭାବୁଛ ? ମୋତେ ଆଲେକ୍‌ଜାଣ୍ଡାର୍‌ର ଚିଠିଟି ଦିଅ ।''

''ଆପଣ ମୋ ପିତାଙ୍କ ନାମଂ ଜାଣନ୍ତି ?

''ସେ ନାମ ନ ଜାଣିବା ବିସ୍ମୟକର ନୁହେଁ କି ? ସେ ଯେ ମୋର ସହୋଦର ଭାଇ ! ଯଦିଓ ତୁମେ ମୋତେ, ମୋର ଘର ଓ ଖାଦ୍ୟକୁ ପସନ୍ଦ ନକଲାପରି ଜଣାପଡୁଛ, ତଥାପି ମୁଁ ତୁମର କକା ଏବଂ ତୁମେ ମୋର ପୁତୁରା । ମୋତେ ଚିଠିଟି ଦେଇ ତୁମେ ଖାଇବାକୁ ବସ ।''

ତାଙ୍କ ହାତରେ ଚିଠିଟି ଦେଇ ମୁଁ ବସିପଡ଼ିଲି । କକା ନିଆଁ ଆଡ଼କୁ ଝୁଙ୍କିପଡ଼ି ଚିଠିଟିକୁ ଓଲଟାଇଲେ । ହଠାତ୍ ପଚାରିଉଠିଲେ, ''ଏଥିରେ କ'ଣ ଲେଖାଅଛି ତୁମେ ଜାଣ କି ?'' କହିଲି, ''ଆପଣ ତ ନିଜେ ଦେଖୁଛନ୍ତି ଯେ ଚିଠିର ମୁଦ ଖୋଲାଯାଇନାହିଁ ।''

''ତୁମେ ତାହାହେଲେ କାହିଁକି ଆସିଛ ? ତୁମେ କ'ଣ ମୋଠାରୁ ସାହାଯ୍ୟ ଚାହୁଁଛ ?''– ସେ ପଚାରିଲେ ।

କହିଲି, ''ମୁଁ ଆପଣଙ୍କୁ ଚିଠିଖଣ୍ଡି ଦେବାପାଇଁ ଆସିଥିଲି । କିଛି ଯଦି ସାହାଯ୍ୟ ମିଳେ ଭଲକଥା । ତେବେ ମୁଁ ଭିକାରିନୁହେଁ ।''

କକା କହିଲେ, ''ତୁମେ ବିରକ୍ତ ହୁଅନାହିଁ । ତୁମ ବାପା କ'ଣ ବହୁତ ଦିନ ହେଲା ମରିଗଲେଣି ?''

କହିଲି, ''ନା, ସେ ମରିବା ମାତ୍ର ତିନିସପ୍ତାହ ହେଲା ।''

କକା କହିଲେ, ''ତୁମ ବାପା ଖୁବ୍ ଭଲମଣିଷ ଥିଲେ । ସେ ଆଦୌ ପ୍ରଗଲ୍‌ଭ ନଥିଲେ । ସେ ମୋ ସମ୍ବନ୍ଧରେ ତୁମକୁ କିଛି କହିଥିଲେ କି ?''

କହିଲି, ''ଏହି ମାତ୍ର ମୁଁ ଜାଣିଲି ଯେ ତାଙ୍କର କେହି ଜଣେ ଭାଇ ଅଛନ୍ତି । ସେ ମରିବା ପୂର୍ବରୁ ମୁଁ ସ'ପରିବାରର ନାମ ସୁଦ୍ଧା ଶୁଣିନଥିଲି ।''

ଏହାପରେ ସେ ମୋତେ ଟିକିଏ ଅଧିକ ଭଲପାଇବା ପରି ବୋଧହେଲା । ଆଦରରେ ସେ ମୋର କାନ୍ଧ ଉପରେ ହାତରଖି କହିଲେ, ''ଆମେ ବେଶ୍ ଭଲରେ ଚଳିବା । ତୁମକୁ ପାଇ ମୁଁ ଖୁବ୍ ଆନନ୍ଦିତ । ଏବେ ଆସ, ତୁମ ରହିବା କୋଠରିକୁ ଯିବା ।''

ଏହା କହି ସେହି ଅନ୍ଧାରରେ ମତେ ଉପର ତାଲାର ଏକ କୋଠରିକୁ ନେଲେ । କୋଠରିଟି ଭିତରେ ଏତେ ବେଶି ଅନ୍ଧକାର ଜମାଟ ବାନ୍ଧିଥିଲା ଯେ, ମୁଁ ନିଜ ବିଛଣା ସୁଦ୍ଧା ଦେଖିପାରୁନଥାଏ, ତେଣୁ ଆଲୁଅଟିଏ ପାଇଁ ଅନୁରୋଧ କଲି ।

କିନ୍ତୁ ସେ କହିଲେ, ''ନା, ଏ ଘର ଭିତରେ ଆଲୁଅ ଜାଳିବାପାଇଁ ମୁଁ ଅନୁମତି ଦେବିନାହିଁ, କାରଣ ମୁଁ ନିଆଁକୁ ଭୟକରେ ।'' ତାଙ୍କ କଥା କାଟିବାକୁ ମୁଁ କୌଣସି ଯୁକ୍ତି ବାଢ଼ିବା ପୂର୍ବରୁ ସେ ଦରଜା ବନ୍ଦକରି ବାହାରପଟୁ ଚାବିଦେଲେ । ଦେଖିଲି ବିଛଣାଟା ଏତେ ବେଶି ଓଦାଳିଆ ଯେ ତା ଉପରେ ଶୋଇବା ଅସମ୍ଭବ । ତା'ଛଡ଼ା କୋଠରି ଭିତରଟା ଖୁବ୍ ଥଣ୍ଡାଲାଗୁଥାଏ । ସୌଭାଗ୍ୟକୁ ମୋଠାରେ କମ୍ବଳଟିଏ ଥାଏ । ସେଥିରେ ନିଜକୁ ଘୋଡ଼ାଇ ଚଟାଣ ଉପରେ ଶୋଇଗଲି ।

ପରଦିନ ସୂର୍ଯ୍ୟୋଦୟ ସଙ୍ଗେ ସଙ୍ଗେ ମୁଁ ଉଠିଲି । ଦେଖିଲି ଶୋଇଥିବା କୋଠରିଟି ଅପେକ୍ଷାକୃତ ବଡ଼ ଏବଂ ସୁସଜ୍ଜିତ । ଦଶ କୋଡ଼ିଏ ବର୍ଷ ପୂର୍ବେ କୋଠରିଟି ଅତି ଆରାମଦାୟକ ଥିବ । ମାତ୍ର ବର୍ତ୍ତମାନ ତାର ସୌନ୍ଦର୍ଯ୍ୟ ନଷ୍ଟ ହୋଇଛି । ଦରଜାରେ ଆଘାତ କରି ଡାକିଲି, କକା ଆସି ଦରଜା ଖୋଲିଲେ ।

ରାତ୍ରି ଭୋଜନ ପାଇଁ ଯେଉଁ ଖାଦ୍ୟ ଓ ପାନୀୟର ବ୍ୟବହାର କରିଥିଲି ସକାଳ ପାଇଁ ମଧ ସେହି ସମାନ ଖାଦ୍ୟ ଓ ପାନୀୟର ବନ୍ଦୋବସ୍ତ ହୋଇଥାଏ । ଜଳଖିଆ ଖାଇସାରିବାପରେ କକା ଖରାରେ ବସି ଧୂଆଁପାନ କରୁକରୁ ଥରକୁ ଥର ମୋତେ ନାନା ପ୍ରକାର ପ୍ରଶ୍ନ ପଚାରୁଥା'ନ୍ତି ।

''ତୁମ ମାଆ କିପରି ଅଛନ୍ତି ?'' ସେ ମରିଯାଇଥିବା କଥା ତାଙ୍କୁ କହିଲି ।

''ତୁମେ ଯେଉଁ ବନ୍ଧୁମାନଙ୍କ କଥା କହୁଥିଲ ସେମାନେ ସବୁ କିଏ ?''

କହିଲି, ''ସେମାନଙ୍କୁ ସମସ୍ତେ କେମ୍ପବେଲ୍ ବୋଲି କହନ୍ତି ।''

ପ୍ରକୃତରେ ସେହି ନାମରେ କେବଳ ଜଣେ ଲୋକ ଥିଲେ ଯାହାଙ୍କୁ ମୁଁ ମୋର ବନ୍ଧୁ ବୋଲି କହିପାରେ । ସେ ଏ ବିଷୟରେ ଚିନ୍ତାକଲେ ଏବଂ ପରିଶେଷରେ କହିଲେ, ''ଡେଭିଡ଼୍, ତୁମେ ମୋ ନିକଟକୁ ଆସି ଭଲକରିଛ । ମୁଁ ତୁମକୁ ସାହାଯ୍ୟ କରିବାର ଯୋଗାଡ଼ କରୁଛି । ତେବେ ପାହାଡ଼ିଆ କେମ୍ପବେଲମାନଙ୍କ ସହିତ ବେଲ୍‌ଫାଓ୍ୱାର୍ ବଂଶୀୟ ପିଲାର ବନ୍ଧୁତ୍ୱକୁ ମୁଁ ପସନ୍ଦକରୁନାହିଁ । ତେଣୁ ଏଠାରେ ଥିବା ସମୟରେ ମୋ କଥା ମାନି ସର୍ବଦା ନୀରବତା ରକ୍ଷାକରି ଚଳୁଥିବ । ଖବରଅନ୍ତର ଜଣାଇବା ପାଇଁ କେବେ କୌଣସି ଲୋକ ପାଖକୁ ଚିଠି-ପତ୍ର ପଠାଇବନାହିଁ ।''

ତାଙ୍କ କଥାରେ ସ୍ୱୀକୃତି ଜଣାଇ କହିଲି, ''ଆପଣ ମୋତେ ସାହାଯ୍ୟ କରିବାକୁ ଇଚ୍ଛା ପ୍ରକାଶ କରିଥିବାରୁ ମୁଁ ଖୁବ୍ ଆନନ୍ଦିତ ଏବଂ କୃତଜ୍ଞ । ମୁଁ ଆପଣଙ୍କ ସହିତ ଭଲଭାବରେ ଚଳିବାପାଇଁ ଚେଷ୍ଟାକରିବି ।''

## ସ'ପରିବାରରେ ମୁଁ ଭୟାନକ ବିପଦର ସମ୍ମୁଖୀନ ହେଲି

ଦିନଟି ଖୁବ୍ ଭଲରେ ଅତିବାହିତ ହେଲା । ଦ୍ୱିପ୍ରହରବେଳେ ଆମେ ଶୀତଳ 'ପୋରିଜ୍' ଏବଂ ରାତିରେ ଗରମ 'ପୋରିଜ୍' ଖାଇଲୁ । କକାଙ୍କର ଖାଦ୍ୟପାନୀୟ ଭିତରେ ଥିଲା 'ପୋରିଜ୍' ଓ 'ବିଅର୍' । ଦୀର୍ଘ ନୀରବତା ପରେ କେତେବେଳେ କେମିତି ଗୋଟିଏ ଅଧେ ପ୍ରଶ୍ନ ପଚାରିବା ଛଡ଼ା ସେ ବେଶି କଥାବାର୍ତ୍ତା କରୁନଥିଲେ । ମୋର ଭବିଷ୍ୟତ ସମ୍ପର୍କରେ ପଚାରିଲେ ସେ ନିରୁତ୍ତର ରହୁଥିଲେ । ରୋଷାଇଘରର ପରବର୍ତ୍ତୀ କୋଠରିରେ ଅଗଣିତ ପୁସ୍ତକ ରହିଥିବା ଦେଖିଲି । ସେଗୁଡ଼ିକ ଉଭୟ ଲାଟିନ୍ ଓ ଇଂରାଜୀ ଭାଷାର । ଅପରାହ୍ନ ଯାକ ମୁଁ ସେହି ପୁସ୍ତକ ଅଧ୍ୟୟନରେ ଆନନ୍ଦ ଲାଭ କରୁଥିଲି ।

ସେଠାରେ ଗୋଟିଏ ଜିନିଷ ଦେଖିଲି ଯାହା ମୋତେ ବିବ୍ରତକରିପକାଇଲା । ଗୋଟିଏ ବହିର ମଲାଟ ତଳେ ଲେଖାଥିଲା– ''ମୋର ଭାଇ ଇବେନ୍‌ଜାର୍‌ର ପଞ୍ଚମ ଜନ୍ମଦିନ ଉଦ୍ଦେଶ୍ୟରେ'' – ଠିକ୍ ମୋ ପିତାଙ୍କର ହସ୍ତାକ୍ଷର । ଖୁବ୍ ବିବ୍ରତ ହୋଇପଡ଼ିଲି । କାରଣ ମୋର ପିତା ଇବେନ୍‌ଜାର୍‌ଙ୍କଠାରୁ କନିଷ୍ଠ ଥିଲେ । ସେ ହୁଏତ ଏକ ଆଶ୍ଚର୍ଯ୍ୟଜନକ ଭୁଲକରିଛନ୍ତି, କିମ୍ବା ତାଙ୍କୁ ପାଞ୍ଚବର୍ଷ ବୟସ ହେବା ପୂର୍ବରୁ ସେ ଏହା ଲେଖିଛନ୍ତି– ହେଲେ କି ଚମତ୍କାର ପରିଷ୍କାର ହସ୍ତାକ୍ଷର !

ରୋଷାଇଘରକୁ ଯାଇ କକା ଇବେନ୍‌ଜାର୍‌କୁ ପଚାରିଲି, ''ବାପା କ'ଣ ଖୁବ୍ ଶୀଘ୍ର ଲେଖିପଢ଼ି ଶିଖିଥିଲେ ?'' କକା ଉତ୍ତର ଦେଲେ, ''କିଏ, ଆଲେକ୍‌ଜାଣ୍ଡାର ? ନା, ସେ ଶୀଘ୍ର ଲେଖାପଢ଼ା ଶିଖିନଥିଲା । ମୁଁ ତା'ଠାରୁ ଆହୁରି ଶୀଘ୍ର ଶିଖିଥିଲି । ପିଲାଦିନେ ମୁଁ ଖୁବ୍ ଚତୁର ଥିଲି । ପଢ଼ିଶିଖିବାକୁ ତାକୁ ଯେତେଦିନ ଲାଗିଥିଲା ମୁଁ ମଧ୍ୟ ସେତେଦିନ ମଧ୍ୟରେ ପଢ଼ିଶିଖିଥିଲି ।''

ଏହା ଶୁଣି ମୁଁ ପଚାରିଦେଲି– ''ବାପା ଆଉ ଆପଣ ଯାଆଁଳାଭାଇ ଥିଲେ କି ?''

ଏହା ଶୁଣିବା ସଙ୍ଗେ ସଙ୍ଗେ ସେ ତାଙ୍କ ଚୌକି ଉପରୁ ଡେଇଁପଡ଼ିଲେ । ''ତୁମେ କାହିଁକି ସେକଥା ପଚାରିଲ ?'' ଏ ପ୍ରଶ୍ନ ପଚାରି ସେ ମୋର କୋଟ୍‌କୁ ଜାବୁଡ଼ିଧରିଲେ ଏବଂ ପ୍ରଥମ ଥର ପାଇଁ ମୋ ଆଡ଼କୁ ସିଧାସଳଖ ଭାବରେ ଚାହିଁଲେ । ତାଙ୍କୁ ନମ୍ରଭାବରେ ପଚାରିଲି, ''ଆପଣ ଏପରି ବିଚଳିତ ହେବାର କାରଣ କ'ଣ ? ମୋ

କୋଟକୁ ଛାଡ଼ିଦିଅନ୍ତୁ । ମୋ ସହିତ ଆପଣଙ୍କର ଏ ପ୍ରକାର ବ୍ୟବହାର ଉଚିତ ନୁହେଁ ।''

କକା ଚେଷ୍ଟାକରି ନିଜକୁ ସମ୍ଭାଳିନେଇ କହିଲେ, ''ଡେଭିଡ୍ ତୁମେ ତୁମ ବାପା କଥା କହି ଭୁଲକରୁଚ । ତୁମେ ତ ଜାଣ ଯେ ସେ ମୋର ଏକମାତ୍ର ଭାଇ ଥିଲେ ।'' ସେ ଯେ ଭାଇପାଇଁ ଦୁଃଖିତ ଥିଲେ ତା ନୁହେଁ । ସେ ପୁଣି ଭୋଜନରେ ବସିଗଲେ ।

ମୋର ଆଶଙ୍କା ଯେ କକା ସମ୍ଭବତଃ ପାଗଳ ଏବଂ ଭୟଙ୍କର । ମୋ କକା କୌଣସି କାରଣରୁ ମୋତେ ଭୟକରୁନଥିଲେ, ଏପରି ଆଚରଣ କାହିଁକି କରିଥାନ୍ତେ ? ଏହି କଥା ମନରେ ଭାବି ମୁଁ ଏହାପରେ ତାଙ୍କୁ ଜଗି ଜଗି ଚଳିବାକୁ ଆରମ୍ଭକଲି । ସେ ମନଭିତରେ କିଛି ଗୁପ୍ତ ଚିନ୍ତା କରୁଥିବାପରି ବୋଧହେଉଥିଲା । ତାଙ୍କୁ ଦେଖି ମୁଁ ନିଶ୍ଚିତ ଭାବେ ଜାଣିଲି ଯେ, ତାଙ୍କର ସେ ଚିନ୍ତା ମୋର ମଙ୍ଗଳପାଇଁ ନୁହେଁ ।

ରାତ୍ରିଭୋଜନ ପରେ କକା ନିଆଁ ସାମ୍ନାରେ କିଛି ସମୟ ପାଇଁ ବସିଲେ । କିଛି ସମୟ ପରେ କହିଲେ, ''ଡେଭିଡ୍, ମୁଁ ତୁମକୁ କିଛି ଟଙ୍କା ଦେବି ବୋଲି ତୁମ ବାପାଙ୍କଠାରେ ପ୍ରତିଜ୍ଞାବଦ୍ଧ ଥିଲି । ସେଥିପାଇଁ ସତତିରିଶ ଗିନି ମୁଁ ପୃଥକ୍ ଭାବରେ ରଖିଛି ।'' ମୁଁ ଜାଣିପାରିଲି ଯେ ଏକଥା ସମ୍ପୂର୍ଣ୍ଣ ମିଥ୍ୟା । ସେ ମୋତେ ବାହାରକୁ ଯିବାପାଇଁ କହିଲେ ଏବଂ ସେହି ସମୟରେ ସେ ଟଙ୍କାତକ ଆଣିଲେ । ମୁଁ ବାହାରକୁ ଯାଇ ଅନ୍ଧାରରେ ଛିଡ଼ାହୋଇଥାଏ । ସେ ଭିତରକୁ ଡାକିବାରୁ ଆସି ଦେଖିଲି ସଇଁତିରିଶିଟି ସ୍ୱର୍ଣ୍ଣଗିନି ଆଗରେ ଥୁଆହୋଇଛି । କକା କହିଲେ, ''ଏହିଥିରୁ ଜାଣିରଖ ଯେ, ମୁଁ ମୋର ପ୍ରତିଜ୍ଞା ପାଳନକରୁଛି ।'' ଏହା କହି ସେ ଗିନିତକ ମୋ ହାତକୁ ଦେଲେ ।

ମୁଁ ତାଙ୍କର ଏତାଦୃଶ ସୁଦୟାରେ ଅତ୍ୟନ୍ତ ଆଶ୍ଚର୍ଯ୍ୟ ହୋଇଗଲି । ତେବେ ଟଙ୍କାତକ ସେ କାହିଁକି ମୋତେ ଦେଲେ ସେକଥା ମୁଁ ବୁଝିପାରିନଥିଲି । ଆମେ ପରସ୍ପର ମୁହାଁମୁହିଁ ହୋଇ ନୀରବରେ କିଛି ସମୟ ବସିରହିଲୁ । ତା'ପରେ ସେ ନୀରବତା ଭାଙ୍ଗି କହିଲେ, ''ଏବେ ତୁମକୁ ମୋ ପାଇଁ କିଛି କରିବାକୁ ପଡ଼ିବ । ମୁଁ ବୁଢ଼ାହୋଇଗଲିଣି । ତେଣୁ ଏହି ଘର ଓ ଉଦ୍ୟାନ ଇତ୍ୟାଦିର ଦାୟିତ୍ୱ ବୁଝିବା ପାଇଁ ତୁମେ ମୋତେ ସାହାଯ୍ୟକରିବ ।''

ମୁଁ ଏ ପ୍ରସ୍ତାବରେ ରାଜିହେଲି । ତା'ପରେ ସେ କହିଲେ, ''ଦେଖ, ଏଠାରେ ଘର ମୁଣ୍ଡରେ ଥିବା ଉଚ୍ଚ ଅଟ୍ଟାଳିକାକୁ ଯିବାପାଇଁ ଚାବିକାଠି ଅଛି । ଅଟ୍ଟାଳିକାର ପାହାଚ ଚଢ଼ି ଉପରକୁ ଉଠିବ ଏବଂ ଅଗ୍ରଭାଗରେ ଥିବା କୋଠରି ଭିତରୁ ବାକ୍ସଟି ଆଣିବ । ପାହାଚଗୁଡ଼ିକ ବେଶ୍ ଭଲ ଅବସ୍ଥାରେ ଅଛି, ତେଣୁ ଆଲୁଅର ଆବଶ୍ୟକତା ନାହିଁ ।''

ବାହାରେ ଘନ ଅନ୍ଧକାର । ଝଡ଼ବତାସ ମାଡ଼ିଆସୁଥାଏ । କାନ୍ଥର ଧାରେ ଧାରେ ରାସ୍ତା କଳନା କରି ଅଟ୍ଟାଳିକାର ଦରଜା ପର୍ଯ୍ୟନ୍ତ ଗଲି । ଦରଜାର ଚାବି ଖୋଲିଲି । ହାତରେ ଅଣ୍ଡାଳି ଅଣ୍ଡାଳି ଶିଡ଼ିର ସନ୍ଧାନ ପାଇଲି ଏବଂ ସେହିଭଳି ପାହାଚଗୁଡ଼ିକୁ ହାତରେ ଅଣ୍ଡାଳି ଅଣ୍ଡାଳି ଉପରକୁ ଉଠିଲି । ସେ ପାହାଚଗୁଡ଼ିକର ଶେଷ କେଉଁଠାରେ ମୁଁ କିଛି ଦେଖିପାରୁନଥାଏ । ଏହିପରି ସମୟରେ ଝଲକାଏ ବିଜୁଳି ମାରି ସମସ୍ତ ଅଟ୍ଟାଳିକାଟିକୁ ଆଲୋକିତକଲା । ସେଇ ମୁହୂର୍ତ୍ତକ ଭିତରେ ଆଗକୁ ଥିବା ପାହାଚଗୁଡ଼ିକ ମୁଁ ଦେଖିପାରିଲି । କିନ୍ତୁ ଏ କି ପ୍ରକାର ପାହାଚ ? ତାହା ଅଟ୍ଟାଳିକାର କାନ୍ଥ ଶେଷ ପର୍ଯ୍ୟନ୍ତ ଯାଇନାହିଁ । କେବଳ ଶିଡ଼ିର ଅଗ୍ରଭାଗ ଉପରକୁ ଉଠି ରାତ୍ରିର ଅନ୍ଧକାର ଭିତରେ ଲୁଚିଯାଇଛି । ମୁଁ ଯଦି ଗୋଟିଏ ଇଞ୍ଚ ଡାହାଣକୁ ପାଦ ପକାଇଥା'ନ୍ତି ତା'ହେଲେ ନିଶ୍ଚୟ ତଳେ ପଡ଼ି ଜୀବନ ହରାଇଥା'ନ୍ତି । ମୁଁ ନିଶ୍ଚିତ ଭାବରେ ଜାଣିଲି ଯେ, କକା ମୋତେ ମରଣ ମୁହଁକୁ ପଠାଇଦେଇଛନ୍ତି ।

ହାତ ଏବଂ ଆଣ୍ଠୁ ଲଗାଇ ମୁଁ ପାହାଚଗୁଡ଼ିକରେ ଘୋଷାରିହୋଇ ପଛକୁ ଆସିବାରେ ଲାଗିଲି ଓ ବହୁ କଷ୍ଟରେ ତଳେ ପହଞ୍ଚିଲି । ତା'ପରେ ଧୀରେ ଧୀରେ ଘର ଆଡ଼କୁ ଫେରିଲି । ସମ୍ଭବତଃ ମାନସିକ ଉତ୍ତେଜନା ଫଳରେ କକା ଚାବି ପକାଇବାକୁ ଭୁଲିଯାଇଥିଲେ । ମୁଁ ନିରବରେ ଘର ଭିତରକୁ ପ୍ରବେଶକରି ତାଙ୍କର ଗତିବିଧି ଲକ୍ଷ୍ୟକଲି । ସେ ମୋ ଆଡ଼କୁ ପଛକରି ଠିଆହୋଇଥାନ୍ତି ଏବଂ ଗୋଟିଏ ବୋତଲରୁ ମଦ୍ୟ ପାନକରିବାରେ ଲାଗିଥାନ୍ତି । ମୁଁ ଅଗ୍ରସର ହୋଇ ମୋର ହାତଯୋଡ଼ିକ ତାଙ୍କ କାନ୍ଧ ଉପରେ ଥୋଇ ତାଙ୍କୁ ଡାକିଦେଲି ।

କକା ଭୀତତ୍ରସ୍ତ ହୋଇ ଚିତ୍କାରକରିଉଠିଲେ ଓ ହାତଯୋଡ଼ାକ ଉପରକୁ ଛାଟି ତଳେ ମଲା ମଣିଷ ପରି ପଡ଼ିଗଲେ । ମୁଁ ତାଙ୍କଠାରୁ ଚାବିନେଣ୍ଟାଟି ନେଇ କୋଠରିର ଚାରିଆଡ଼େ ଭଲଭାବରେ ଦେଖିଲି । ବାକ୍ସଗୁଡ଼ିକ କାଗଜ ଓ ଟଙ୍କାରେ ପୂର୍ଣ୍ଣ ଥିଲା । ପ୍ରଚୁର ଅର୍ଥ ଥିଲେ ମଧ କକା କାହିଁକି ଦରିଦ୍ର ଜୀବନ ଯାପନ କରୁଛନ୍ତି ସେ କଥା ଭାବିଲି । ଗୋଟିଏ ଟ୍ରଙ୍କ୍ ଭିତରେ କଳଙ୍କିଲଗା ଛୁରୀଟିଏ ଥିଲା । ମୁଁ ସେଇଟି ମୋର କୋଟ୍ ଭିତରେ ଲୁଚାଇରଖିଲି । କକା ପୂର୍ବପରି ମୃତବତ୍ ପଡ଼ିରହିଥାନ୍ତି । ତାଙ୍କ ମୁହଁକୁ କିଛି ପାଣି ଛାଟିବା ପରେ ସେ ଆଖି ଖୋଲିଲେ । ମୋତେ ଦେଖି ତାଙ୍କର ଆଖିଯୋଡ଼ିକ ଶଙ୍କାକୁଳ ହୋଇଉଠିଲା । କହିଲି,''ଏବେ ବସନ୍ତୁ ।''

ସେ ପାଟିକରିଉଠିଲେ, ''ତୁମେ କ'ଣ ବଞ୍ଚିଛ ?''

କହିଲି, ''ହଁ, ଆପଣ ମୋତେ ମାରିବା ପାଇଁ ଚେଷ୍ଟାକରିଥିଲେ ବି ମୁଁ ବଞ୍ଚିଯାଇଛି ।''

ମୋ କଥା ଶୁଣି ସେ ମଉଳିଗଲେ । ସେ ପର୍ଯ୍ୟନ୍ତ ମୋର କ୍ରୋଧ ପ୍ରଶମିତ ହୋଇ ନଥିଲା । ମୁଁ ତାଙ୍କୁ ଗୋଟିକ ପରେ ଗୋଟିଏ ପ୍ରଶ୍ନ ପଚାରିବାରେ ଲାଗିଲି ।

ପ୍ରଶ୍ନଗୁଡ଼ିକ ହେଲା– ସେ ମୋତେ କାହିଁକି ଟଙ୍କା ଦେଲେ, କାହିଁକି ମିଛକଥା କହିଲେ, ପୁଣି କାହିଁକି ସେ ମୋତେ ମାରିବାକୁ ଚେଷ୍ଟାକରୁଥିଲେ ?

ସେ ମୋର କଥାଗୁଡ଼ିକ ନୀରବରେ ଶୁଣିଲେ ଏବଂ ଶେଷରେ ତାଙ୍କୁ ବିଛଣାକୁ ନେଇଯିବାପାଇଁ ମୋତେ ଅନୁରୋଧକଲେ । ମୋତେ କହିଲେ, ''ଆସନ୍ତାକାଲି ତୁମେ ତୁମ ପ୍ରଶ୍ନର ଉତ୍ତରପାଇବ । ମୁଁ ବର୍ତ୍ତମାନ ଖୁବ୍ ଦୁର୍ବଳ ।''

ତା'ପରେ ମୁଁ ତାଙ୍କୁ ତାଙ୍କ କୋଠରିକୁ ନେଇଗଲି । ଭିତରେ ଛାଡ଼ି ବାହାରୁ ଚାବି ଦେଲି ଓ ପୁଣି ରୋଷାଇଘରକୁ ଫେରିଆସି ସେଠାରେ ଥିବା ବାକ୍ସ ଉପରେ ଶୋଇପଡ଼ିଲି ।

# ମୁଁ 'କୁଇନ୍ସ୍‌ଫେରି'କୁ ଗଲି

ସେଦିନ ରାତିସାରା ବର୍ଷା ହେବାକୁ ଲାଗିଲା । ତହିଁ ପରଦିନ ସକାଳେ ହାଡ଼ଥରା ଶୀତ-ପବନ ବହୁଥାଏ । ମୁଁ ଉପର ମହଲାକୁ ଯାଇ କକାଙ୍କ କୋଠରିର ତାଲା ଫିଟାଇ ତାଙ୍କୁ ମୁକ୍ତକରିଦେଲି । ଜଳଖିଆ ଖାଇସାରିବା ପରେ ମୋ ପ୍ରଶ୍ନର ଉତ୍ତର ଦେବାପାଇଁ ତାଙ୍କୁ ମନେପକାଇଦେଲି । ତାଙ୍କ ମୁହଁକୁ ଚାହିଁ ଜାଣିଲି ଯେପରି ସତକଥା କହିବାପାଇଁ ସେ ପ୍ରସ୍ତୁତ ହୋଇଛନ୍ତି ।

ଏହି ସମୟରେ ବାହାର ଦରଜାରେ କିଏ ଆଘାତକଲା । ମୁଁ କକାଙ୍କୁ ବସି ରହିବାକୁ କହି ଦରଜା ଖୋଲି ଦେଖିଲି ଜଣେ ପିଲା ନାବିକପୋଷାକ ପିନ୍ଧି ଛିଡ଼ାହୋଇଛି । ମୋତେ ଦେଖିବାଯଣି ନାବିକମାନଙ୍କ ମଧ୍ୟରେ ପ୍ରଚଳିତ ନୃତ୍ୟଟିଏ ସେ ଦରଜା ସାମ୍ନାରେ ପରିବେଷଣକଲା । ସେ ଖୁବ୍ ହର୍ଷୋଦ୍‌ଫୁଲ୍ଲ ଭାବରେ ନୃତ୍ୟ କରୁଥିଲେ ହେଁ, ସେ ଯେ ଅଶାନ୍ତ ଓ ଭୋକିଲା ତାହା ଅନୁମାନକରିନେଲି ।

ତାକୁ ଆସିବାର କାରଣ ପଚାରିବାରୁ ସେ କହିଲା, ''ମୁଁ ମୋର କପ୍ତାନ୍‌ଙ୍କଠାରୁ ମି:ବେଲ୍‌ଫାଓ୍ୱାର୍‌ଙ୍କ ପାଖକୁ ଗୋଟିଏ ଖବରନେଇ ଆସିଛି ।'' ସେଥି ସଙ୍ଗେ ସଙ୍ଗେ ସେ ଯେ ଖୁବ୍ ବୁଭୁକ୍ଷୁ ଏ କଥା ମୋତେ ଜଣାଗଲା ।

କହିଲି, ''ତା'ହେଲେ ଭିତରକୁ ଆସ । ତୁମକୁ କିଛି ଖାଇବାକୁ ଦିଆଯିବ ।''

ମୁଁ ତାକୁ ଖାଇବାକୁ ଦେଲି । କକା ସେତେବେଳେ ସେ ଆଣିଥିବା ଚିଠିଟିକୁ ପଢ଼ିଲେ । ତା'ପରେ କ'ଣ ଟିକିଏ ଭାବି ସେ ଚିଠିଟି ପଢ଼ିବା ପାଇଁ ମୋ ହାତକୁ ବଢ଼ାଇଦେଲେ । ଏହାକୁ କପ୍ତାନ ଏଲିଆସ୍ ହୋସିଜିନ୍ ଲେଖିଥିଲେ ଏବଂ ସେଥିରେ ସେ କକାଙ୍କୁ ଜଣାଇଥିଲେ ଯେ ସେଦିନ ଜାହାଜ ବନ୍ଦର ଛାଡ଼ିବ । ତେଣୁ କକାଙ୍କର ଆଉ କିଛି ଜିନିଷ ଦରକାର ଥିଲେ ବରାଦଦେବେ ।

କକା କହିଲେ, ''ଦେଖ ଡେଭିଡ୍, କପ୍ତାନଙ୍କ ପାଖରେ ମୋର କିଛି କାମ ଅଛି । ସେଠା କାମ ସାରି ଆମେ ଦିହେଁ ଯାଇ ମି:ରେଙ୍କିଲୋର୍ ନାମକ ଓକିଲଙ୍କ ସହିତ ସାକ୍ଷାତକରିବା । ଯେତେ ଯାହା ଘଟିଯାଇଛି ସେସବୁ କଥା ମୁଁ କହିଲେ ତୁମେ ବିଶ୍ୱାସ କରିନପାର; କିନ୍ତୁ ମି.ରେଙ୍କିଲୋର୍ଙ୍କ କଥା ତୁମେ ନିଶ୍ଚୟ ବିଶ୍ୱାସ କରିବ । ସେ ଜଣେ ସମ୍ମାନାସ୍ପଦ ବୃଦ୍ଧବ୍ୟକ୍ତି ଏବଂ ତୁମ ବାପାଙ୍କ ସହିତ ତାଙ୍କର ପରିଚୟ ଥିଲା ।''

ଏ ଯୋଜନା ମୋ ପକ୍ଷରେ କ୍ଷତିକାରକ ନୁହେଁ ବୋଲି ମୁଁ ଅନୁମାନକଲି । ଗୋଟିଏ ଜନାକୀର୍ଣ୍ଣ ବନ୍ଦରରେ କକା ମୋତେ ଆକ୍ରମଣ କରିବାକୁ କୌଣସିମତେ ସାହସ କରିବେନାହିଁ । କହିଲି, ''ଭଲକଥା, ଚାଲନ୍ତୁ 'କ୍ୱିନ୍ସ୍‌ଫେରି'କୁ ଯିବା ।''

ଅଳ୍ପ କିଛି ସମୟ ପରେ ଆମ୍ଭେମାନେ ଯାତ୍ରାରମ୍ଭକଲୁଁ । କକା ଇବେନ୍‌ଜାର ନୀରବରେ ଚାଲିଥାନ୍ତି ଓ ମୁଁ ଜାହାଜରୁ ଆସିଥିବା ସେହି ପିଲାଟି ସହିତ କଥାବାର୍ତ୍ତା କରୁଥାଏ । ତାହାର ନାମ ରୋନ୍‌ସୋମ୍ । ପିଲାଟି ଦୁର୍ବଳ ଏବଂ ନିର୍ବୋଧ । ତା କଥା ଶୁଣି ତା ପ୍ରତି ମୋର ଦୟାହେଲା । ତାର ମାଲିକ କପ୍ତାନ୍ ହୋସିଜିନ୍ ଜଣେ ଭୟଙ୍କର ଓ ଅସାଧୁ ପ୍ରକୃତିର ଲୋକ ବୋଲି ମୋତେ ବୋଧହେଲା; କିନ୍ତୁ ଏହିସବୁ ଦୁର୍ଗୁଣର ପ୍ରଶଂସା କରିବାକୁ ସେ ପିଲା ଶିଖିଥିଲା । ଶେଷରେ ଆମ୍ଭେମାନେ ଗୋଟିଏ ପାହାଡ଼ର ଶିଖର ଦେଶରେ ପହଞ୍ଚିଲୁ । ନିମ୍ନରେ 'ଫୋର୍ଥ' ନଦୀର ମୁହାଣ ଏବଂ 'କ୍ୱିନ୍ସ୍‌ଫେରି' ଆମ୍ଭମାନଙ୍କର ଦୃଷ୍ଟିଗୋଚର ହେଲା । ନଦୀର ଘାଟ ନିକଟରେ ଗୋଟିଏ ଛୋଟ କୋଠାଘର । ଏହା 'ହବେସ ପାନ୍ଥଶାଳା' ନାମରେ ଅଭିହିତ । ଏହି ସ୍ଥାନରେ କପ୍ତାନ ହୋସିଜିନ୍‌ଙ୍କ ସହିତ କକାଙ୍କର ସାକ୍ଷାତ କରିବାର କଥା । ଘାଟରେ ଗୋଟିଏ ଛୋଟ ଡଙ୍ଗା ବନ୍ଧା ହୋଇ ରହିଥାଏ ଏବଂ ମୁହାଣକୁ ଟିକିଏ ଛାଡ଼ି 'କୋଭେନେଣ୍ଟ' ଜାହାଜ ଦେଖାଯାଉଥାଏ ।

ଆମେ ପାନ୍ଥଶାଳାରେ ପହଞ୍ଚିବା ସଙ୍ଗେ ସଙ୍ଗେ ରୋନ୍‌ସୋମ୍ ଆମକୁ ଉପର ମହଲାରେ ଥିବା ଗୋଟିଏ ଛୋଟ କୋଠରିକୁ ନେଇଗଲା । ସେଠାରେ ଜଣେ ଦୀର୍ଘ, ଭୀଷଣାକୃତିବିଶିଷ୍ଟ କୃଷ୍ଣରଙ୍ଗର ଲୋକ ବସି କ'ଣ ଲେଖୁଥିଲେ । ଆମ୍ଭମାନଙ୍କୁ ଦେଖି ସେ ହଠାତ୍ ଛିଡ଼ାହୋଇପଡ଼ିଲେ ଏବଂ ଟିକିଏ ଆଗେଇଆସି କହିଲେ, ''ମି:ବେଲଫାଓ୍ୱାର, ମୁଁ ଆପଣଙ୍କର ସାକ୍ଷାତ ଲାଭକରି ଆନନ୍ଦିତ । ଆପଣ ଠିକ୍ ସମୟରେ ପହଞ୍ଚିଲେ । ଆଜି ରାତି ଭିତରେ ଆମେ ଫୋର୍ଥ ନଦୀର ବାହାରକୁ ଚାଲିଯିବୁ ।''

କକା ଓ କପ୍ତାନ ଦୀର୍ଘ ସମୟଧରି କଥାବାର୍ତ୍ତା କରିବାକୁ ଲାଗିଲେ । କକାଙ୍କୁ ମୋର ଦୃଷ୍ଟିର ଆଢୁଆଳରେ ରଖିବାକୁ ମୁଁ ଇଚ୍ଛାକରୁନଥିଲେ ହେଁ କୋଠରି ଭିତରର ଗରମ ଯୋଗୁଁ ମୁକ୍ତ ବାୟୁ ସେବନ କରିବା ପାଇଁ ମୁଁ ତଳକୁ ଚାଲିଆସିଲି । ତଳକୁ ଆସି ଘାଟରେ ଏଣେତେଣେ ବୁଲୁଥାଏ । ଆଗରେ ବୋହିଯାଉଥିବା ନଦୀଟିକୁ

ଦେଖିବାକୁ ଖୁସିଲାଗୁଥାଏ । କିଛିଦୂରରେ 'କୋଭେନେଣ୍ଟ' ଜାହାଜର ନାବିକମାନେ ଜାହାଜର ପାଲଗୁଡ଼ିକ ସଜାଡ଼ିବାରେ ଲାଗିଥାନ୍ତି । କେତେଜଣ ନାବିକ କପ୍ତାନଙ୍କୁ ଅପେକ୍ଷାକରି ଛୋଟ ଡଙ୍ଗାଟିରେ ବସିଥାନ୍ତି । ରୋନ୍‌ସୋମ୍ ସହିତ କିଛି ସମୟ କଥାବାର୍ତ୍ତା କରିବାପରେ ତାଙ୍କୁ ନେଇ ପାନ୍ଥଶାଳା ଭିତରକୁ ସାମାନ୍ୟ ଜଳଯୋଗ ପାଇଁ ଗଲି ।

ସେଠାରେ ବସିଥିବା ସମୟରେ ପାନ୍ଥଶାଳାର ମ୍ୟାନେଜର ଭିତରକୁ ଆସିଲେ । ସେ ସେହି ଦେଶର ପ୍ରାୟ ପ୍ରତ୍ୟେକ ଲୋକକୁ ଚିହ୍ନନ୍ତି । ତେଣୁ ସେ ମି.ରେଙ୍କିଲୋର୍‌ଙ୍କୁ ଜାଣନ୍ତି କି ନାହିଁ ବୋଲି ପଚାରିଲି । ସେ କହିଲେ, ''ହଁ, ମୁଁ ତାଙ୍କୁ ଭଲରୂପେ ଜାଣେ । ସେ ଜଣେ ଖୁବ୍ ସାଧୁ ପ୍ରକୃତିର ଲୋକ ।'' ଏହା କହି ସେ ମୋତେ ଭଲ ଭାବରେ ନିରୀକ୍ଷଣ କଲେ ଏବଂ କହିଲେ, ''ତୁମେ ତ ମି.ଇବେନ୍‌ଜାର୍‌ଙ୍କ ସାଙ୍ଗରେ ଆସିଛ– ତୁମେ ତାଙ୍କର ସମ୍ପର୍କୀୟ କି ?''

ମୁଁ ମନାକଲି, କାରଣ ଇବେନ୍‌ଜାରଙ୍କ ସହିତ ମୋର କୌଣସି ସମ୍ପର୍କ ଥିବା କଥା କହିବାକୁ ମୁଁ ଲଜ୍ଜିତ ହେଉଥିଲି । ସେ କହିଲେ, ''ତୁମେ ଠିକ୍ ମି.ଆଲେକ୍‌ଜାଣ୍ଡାରଙ୍କ ପରି ଦେଖାଯାଉଥିବାରୁ ମୁଁ ସେପରି ଭାବିଲି ।''

ପିତାଙ୍କ ନାମ ଶୁଣି ମୋ ହୃଦୟ ଭିତରେ ଏକ ଅଜଣା ପୁଲକ ଅନୁଭବକଲି । ମୁଁ ତାଙ୍କୁ କେବଳ କହିଲି ଯେ, ମି: ଇବେନ୍‌ଜାର୍‌ଙ୍କୁ ଏ ଦେଶରେ କେହି ଭଲପାଉଥିବା ପରି ମୁଁ ବୋଧକରେନାହିଁ । ପାନ୍ଥଶାଳାର ମ୍ୟାନେଜର ମୋ କଥା ସମର୍ଥନ କରି କହିଲେ, ''ସେ ଜଣେ ଅତି ଦୁଷ୍ଟ ପ୍ରକୃତିର ବୃଦ୍ଧଲୋକ । ତାଙ୍କୁ ଫାଶୀକାଠରେ ଝୁଲିବାର ଦେଖିଲେ ଅନେକ ଲୋକ ବୋଧେ ଖୁସିହେବେ; କିନ୍ତୁ ମି: ଆଲେକ୍‌ଜାଣ୍ଡାରଙ୍କ ବିଷୟରେ ଜନରବ ଶୁଣାଯିବା ପୂର୍ବରୁ ସେ ଖୁବ୍ ଭଲମଣିଷ ଥିଲେ ।''

ମୁଁ ପଚାରିଲି, ''କ'ଣ ସେ ଜନରବ ?''

କହିଲେ, 'ତାହା ହେଉଛି ମି: ଇବେନ୍‌ଜାର୍ ତାଙ୍କୁ ମାରିବା କଥା ।''

ପଚାରିଲି, ''ସେ କାହିଁକି ତାଙ୍କୁ ମାରିଥିବେ ?''

''ଖୁବ୍ ସମ୍ଭବ ସେହି ଘରଟି ପାଇବାପାଇଁ ସେ ଏହା କରିଥିବେ ।''

ପୁଣି ପଚାରିଲି, ''ଆପଣ କେଉଁ ଘରକଥା କହୁଛନ୍ତି ? ସ'ପରିବାରର ଘର ?''

ସେ ମୋ କଥାକୁ ସମର୍ଥନ କରି କହିଲେ, ''ତାହା ନ ହୋଇ ଆଉ ଅନ୍ୟ କେଉଁ ଘର କଣ ହୋଇପାରେ ?''

ମୁଁ ତାଙ୍କୁ ପଚାରିଲି, ''ତାହାହେଲେ ଆଲେକ୍‌ଜାଣ୍ଡାର କ'ଣ ବଡ଼ପୁଅ ଥିଲେ ?'' ମ୍ୟାନେଜର କହିଲେ, ''ହଁ, ସେ ବଡ଼ପୁଅ ଥିଲେ । ତାହା ହୋଇନଥିଲେ ଇବେନ୍‌ଜାର ତାଙ୍କୁ ମାରିଥା'ନ୍ତେ କାହିଁକି ?'' ଏହାପରେ ମ୍ୟାନେଜର ତାଙ୍କ କାମରେ ଚାଲିଗଲେ ।

ସେ ଯାହା କହିଲେ ମୁଁ ସେ କଥା ଆଗରୁ ଅନୁମାନ କରିଥିଲି । ସ'ପରିବାରର ଘର, ଜମିବାଡ଼ି ଏବଂ ଟଙ୍କାକଉଡ଼ିର ଅଧିକାରୀ ମୁଁ, ମୋର କକା ନୁହେଁ, ଏହା ମୁଁ ଭଲଭାବରେ ହୃଦୟଙ୍ଗମକଲି । ମୁଁ ସେଠାରେ ବସି ଭାବୁଥାଏ ଓ ଝରକା ବାଟେ ବାହାରକୁ ଚାହିଁଥାଏ । ଏହିପରି ସମୟରେ ଦେଖିଲି କପ୍ତାନ ହୋସିଜିନ୍ ଘରୁ ବାହାରି ଘାଟ ଆଡ଼କୁ ଗଲେ ଏବଂ ଡଙ୍ଗାରେ ବସିଥିବା ନାବିକମାନଙ୍କୁ କ'ଣ ଆଦେଶଦେଲେ ।

ମୁଁ ଏହିପରି ଭାବନାରତ ଥିବା ସମୟରେ କକା ମୋତେ ଡାକୁଥିବାର ଶୁଣିଲି । ସେମାନେ ଦିହେଁ ରାସ୍ତା ଉପରେ ମୋତେ ଅପେକ୍ଷାକରିଥିଲେ । କପ୍ତାନ୍ ମୋ ସହିତ ଖୁବ୍ ଭଦ୍ରଭାବରେ କଥାବାର୍ତ୍ତା କଲେ ।

ସେ କହିଲେ, ''ମି: ବେଲଫାଓ୍ୱାର ତୁମ ସମ୍ବନ୍ଧରେ ମୋତେ ଅନେକ କଥା କହିଛନ୍ତି । ତୁମର ଚାହାଣି କାହିଁକି କେଜାଣି ମୋତେ ଭାରି ଭଲଲାଗୁଛି । ମୋର ଇଚ୍ଛା ହେଉଛି ତୁମ ସହିତ କିଛି ସମୟ କଥାବାର୍ତ୍ତା କରନ୍ତି । ତୁମକୁ ନିଶ୍ଚୟ ମୋ ସହିତ ଅଧଘଣ୍ଟାଏ ପାଇଁ ଜାହାଜ ଉପରକୁ ଯିବାକୁପଡ଼ିବ । ସେଠାରେ ତୁମେ ମୋ ସହିତ ସାମାନ୍ୟ ଜଳଯୋଗ କରିବା ପାଇଁ ଅନିଚ୍ଛା ପ୍ରକାଶ କରିବ ନାହିଁ ବୋଲି ମୋର ଆଶା ।''

ମୋର ମଧ ଜାହାଜର ଭିତର ଅଂଶ ଦେଖିବାପାଇଁ ଖୁବ୍ ଇଚ୍ଛାଥାଏ । ତଥାପି ବିପଦ ଆଶଙ୍କା କରି କହିଲି, ''ମୋର ଓ କକାଙ୍କର ଜଣେ ଓକିଲଙ୍କ ପାଖେ କାମ ଅଛି ।''

ସେ କହିଲେ, ''ମୁଁ ସେ କଥା ଜାଣେ । ତେବେ ଏହି ଡଙ୍ଗାତ ତୁମମାନଙ୍କୁ ନେଇ ସହର ଘାଟରେ ପହଞ୍ଚାଇଦେବ । ରେଙ୍କିଲୋରଙ୍କ ଘର ସେଇ ପାଖରେ ।'' ତାପରେ ସେ ମୋ କାନପାଖରେ କହିଲେ, ''ଇବେନ୍‌ଜାର୍ ବୁଢ଼ା ଭାରି ସାଙ୍ଘାତିକ ଓ ଚତୁର । ଜାହାଜ ଉପରକୁ ଆସ– ମୁଁ ତା ବିଷୟରେ ଅନେକ କଥା କହିବି ।'' ସେ ମୋତେ ଧରି ଡଙ୍ଗା ଭିତରକୁ ଗଲେ । କକା ମୋ ପଛରେ ଡଙ୍ଗାରେ ବସିଲେ । ତେଣୁ ସେ ଯେ ମୋତେ ଛାଡ଼ି ପଳାଇ ଯାଇପାରିବେ ଏ ପ୍ରକାର ଭୟ ମୋର ନଥିଲା ।

ଡଙ୍ଗା ଜାହାଜଧାରରେ ପହଞ୍ଚିଲା । ହୋସିଜିନ୍ ଘୋଷଣାକଲେ ଯେ ସେ ଓ ମୁଁ ପ୍ରଥମେ ଜାହାଜ ଉପରକୁ ଯିବୁ । ଏହାପରେ ଖଣ୍ଡିଏ ଦଉଡ଼ି ତଳକୁ ଖସାଇଦିଆଗଲା ଏବଂ ତାହା ସାହାଯ୍ୟରେ ମୋତେ ଜାହାଜ ଉପରକୁ ଟେକି ନିଆଗଲା । ତା'ପରେ ଉଠିଲେ କପ୍ତାନ । ଜାହାଜ ଉପରେ ଆଶ୍ଚର୍ଯ୍ୟଜନକ ଜିନିଷଗୁଡ଼ିକ ଦେଖି ମୁଁ ଆନନ୍ଦିତ ହେଲି । କପ୍ତାନ ଗୋଟି ଗୋଟି କରି ଜିନିଷର ନାମ କହି ସେଗୁଡ଼ିକର କାର୍ଯ୍ୟ କ'ଣ ମୋତେ ବୁଝାଇଦେଉଥାନ୍ତି ।

ମୁଁ ହଠାତ୍ ପଚାରିଲି, ''କକା କେଉଁଠରେ ଅଛନ୍ତି ?'' ମି: ହୋସିଜିନ୍ କହିଲେ, ''ସତକଥା, ସେ କାହାନ୍ତି ?'' ତାଙ୍କ ମୁଖମଣ୍ଡଳ କିପରି ଭୀଷଣ ଦେଖାଯାଉଥିଲା ।

ମୁଁ କିଂକର୍ତ୍ତବ୍ୟବିମୂଢ଼ ହୋଇପଡ଼ିଲି । ଜାହାଜଧାରକୁ ଯାଇ ଦେଖିଲି, କକାଙ୍କୁ ନେଇ ଡଙ୍ଗାଟି ଖୁବ୍ ଦ୍ରୁତଗତିରେ ସହର ଆଡ଼କୁ ଚାଲିଯାଉଛି । ମୁଁ ସାହାଯ୍ୟ ଭିକ୍ଷାକରି ଖୁବ୍ ଉଚ୍ଚସ୍ୱରରେ ଚିତ୍କାରକଲି । କକା ମୋ ଆଡ଼କୁ ମୁହଁ ଫେରାଇ ଚାହିଁଲେ; କିନ୍ତୁ ତାଙ୍କ ମୁଖମଣ୍ଡଳରେ ନିଷ୍ଠୁରତା ଓ ଭୀଷଣତା ପ୍ରକଟିତ ହେଉଥିଲା । ତା'ପରେ ମୁଁ ଆଉ କକାଙ୍କୁ ଦେଖିନାହିଁ । କେତେଗୁଡ଼ିଏ ବଳିଷ୍ଠ ହାତ ମୋତେ ଭିତରକୁ ଟାଣିନେଇଗଲା । ଏହା ପରେପରେ ମୁଣ୍ଡରେ ଏକ ଶକ୍ତ ଆଘାତ ପାଇ ଚେତାଶୂନ୍ୟ ହୋଇ ତଳେ ପଡ଼ିଗଲି ।

## କୋଭେନେଣ୍ଟ୍ ଜାହାଜରେ ମୁଁ ସମୁଦ୍ର ଭିତରକୁ ଗଲି

ଚେତନା ଲାଭକଲାପରେ ମୁଁ ଖୁବ୍ କଷ୍ଟ ଅନୁଭବକରୁଥାଏ । ସେତେବେଳେ ଚାରିଆଡ଼େ ଅନ୍ଧାର ଘୋଟି ରହିଥାଏ ଓ ମୋର ହାତ ଗୋଡ଼ ବନ୍ଧାହୋଇଥାଏ । ଚାରିପାଖରେ ଘେରି ରହିଥିବା ଜଳର ଗୁରୁଗର୍ଜନରେ କାନ ଅତଡ଼ାପଡ଼ିଯାଉଥାଏ । ସମସ୍ତ ଜଗତ ଉପର ତଳ ହୋଇ ବୁଲିବାପରି ମୁଁ ଅନୁଭବ କରୁଥାଏ । ଅନେକ ସମୟ ପରେ ମୁଁ ବୁଝିଲି ଯେ ଜାହାଜର ଯେଉଁ ଅଂଶ ପାଣି ଭିତରେ ଥାଏ ମୁଁ ସେହିପରି ସ୍ଥାନରେ ଶୋଇଛି । ମୋ ଉପରେ ଜାହାଜ ଯାତ୍ରୀମାନଙ୍କର କୋଳାହଳ ଶୁଣିବାକୁ ପାଇଲି । ଧୀରେ ଧୀରେ ମୁଁ ମୋର ଅବସ୍ଥିତି ସମ୍ବନ୍ଧରେ ଧାରଣାକରିନେଲି ଓ ମୋର ଦୁର୍ଗତି କଥା ଭାବୁ ଭାବୁ ଶୋଇପଡ଼ିଲି ।

ଉଠିଲାବେଳକୁ ଗୋଟିଏ ଲଣ୍ଠନର ଆଲୁଅ ମୋ ମୁହଁରେ ପଡ଼ିଥାଏ । ଜଣେ କ୍ଷୁଦ୍ରାକୃତିର ଲୋକ ସେଠାରେ ଛିଡ଼ାହୋଇଥାନ୍ତି । ବୟସ ପ୍ରାୟ ତିରିଶ ବର୍ଷ ହେବ । ନୀଳ ରଙ୍ଗର ଆଖି । ଚିକ୍କଣ କେଶ । ପଚାରିଲେ, ''କିପରି ଅଛ ?''

ମୁଁ ଉତ୍ତର ଦେଇପାରିଲିନାହିଁ । ଦୀର୍ଘଶ୍ୱାସ ଛାଡ଼ିବାକୁ ଲାଗିଲି । ଆଗନ୍ତୁକଜଣକ ଆଣ୍ଠୁମାଡ଼ି ବସିଲେ ଓ ମୋ ମୁଣ୍ଡର କ୍ଷତରେ ବ୍ୟାଣ୍ଡେଜ ବାନ୍ଧିଦେଲେ । କହିଲେ, ''ଆଘାତ ଖୁବ୍ ଜୋର୍‌ରେ ହୋଇଛି । ତଥାପି ନିରୁତ୍ସାହିତ ହୁଅନାହିଁ । ତୁମେ ଅଶୁଭ ସମୟରେ ଯାତ୍ରାରମ୍ଭ କରିଛ, ସେଥିପାଇଁ ଏତେ ଦୁଃଖ ବରଣକଲ; କିନ୍ତୁ ଏହି ଦୁଃଖର ନିଶ୍ଚୟ ଅବସାନ ଘଟିବ । ତୁମେ କିଛି ଖାଇଛ ?''

ମୁଁ କିଛି ଖାଇପାରିବିନାହିଁ ବୋଲି କହିବାରୁ ସେ ମୋତେ ଟିକିଏ ବ୍ରାଣ୍ଡି ଓ ଜଳ ପିଇବାକୁ ଦେଇ ଚାଲିଗଲେ । ମୁଁ ସେହି ଅନ୍ଧକାର ଓ ଆବର୍ଜନାପୂର୍ଣ୍ଣ ସ୍ଥାନରେ ପଡ଼ିରହିଲି । ଚୂଟିଆମୂଷା କେତୋଟି ମୋ ଦେହ ଉପର ଦେଇ ଦୌଡ଼ାଦୌଡ଼ି କରିଲାଗିଥାନ୍ତି । ଏହାପରେ ସେହି ବ୍ୟକ୍ତି ଯେତେବେଳେ ଦ୍ୱିତୀୟ ଥର ପାଇଁ ମୋ

ପାଖକୁ ଆସିଲେ ମୁଁ ଆନନ୍ଦରେ ଚିତ୍କାରକରିଉଠିଲି । ସେ ଏଥର କପ୍ତାନଙ୍କୁ ସାଙ୍ଗରେ ନେଇ ଆସିଥିଲେ । ସେ ପୂର୍ବଥର ଭଳି ମୋର କ୍ଷତ ସ୍ଥାନ ପରିଷ୍କାରକରି ବ୍ୟାଣ୍ଡେଜ ବାନ୍ଧିଦେଲେ । ହୋସିଜିନ ମୋ ଆଡ଼କୁ ଚାହିଁରହିଥାଏ । ତାର ଚାହାଣିରେ ବିସ୍ମୟ ଏବଂ ବିରକ୍ତି ପୂରିରହିଥାଏ ।

ବ୍ୟାଣ୍ଡେଜ ବାନ୍ଧି ସାରିବା ପରେ ପ୍ରଥମ ବ୍ୟକ୍ତି କପ୍ତାନଙ୍କୁ କହିଲେ "ଆପଣ ନିଜେ ଦେଖୁଛନ୍ତି ରୋଗୀକୁ ଭୀଷଣ ଜ୍ୱର, କ୍ଷୁଧା ନାହିଁ । ସେଥିରେ ପୁଣି ଏହି ସ୍ଥାନ ସମ୍ପୂର୍ଣ୍ଣ ଅନ୍ଧକାରାଚ୍ଛନ୍ନ । ତାକୁ ଯଦି ଏଠାରେ ରଖାଯାଏ ସେ ଅତି ଶୀଘ୍ର ମୃତ୍ୟୁବରଣ କରିବ । ମୁଁ ଭାବୁଛି ତାକୁ ଏଠାରୁ ଉପରେ ଥିବା ଯାତ୍ରୀମାନଙ୍କର ଶୋଇବା କୋଠରିକୁ ନେଇଯିବା ।"

ଏକଥା ଶୁଣି କପ୍ତାନ କହିଲେ, "ମି: ରିୟାର୍ଚ, ଆପଣଙ୍କ କଥା କେବଳ ଆପଣଙ୍କୁ ଭଲମନେହେଉଛି । ସେ ଯେଉଁଠାରେ ଅଛି ସେହିଠାରେ ଥାଉ । ଆପଣ ଆସନ୍ତୁ– ଆମକୁ ଡେକ୍ ଉପରକୁ ଯିବାକୁ ପଡ଼ିବ ।" ମି: ରିୟାର୍ଚ କପ୍ତାନଙ୍କ ହାତଧରି ଅଟକାଇଲେ ଏବଂ କହିଲେ, "ଆପଣ ଏ ଜାହାଜରେ ହତ୍ୟାକାଣ୍ଡ ଭିଆଇବାପାଇଁ ଦରମା ପାଉଥିଲେ ବି ମୁଁ ଏ ଜାହାଜରେ ଦ୍ୱିତୀୟ ଭାରପ୍ରାପ୍ତ କର୍ମଚାରୀର କାମ କରିବା ପାଇଁ ଦରମା ପାଉଛି ।"

କପ୍ତାନ ହୋସିଜିନ୍ ତାଙ୍କ କଥା ଶୁଣି ସଙ୍ଗେ ସଙ୍ଗେ ବୁଲିପଡ଼ିଲେ । କହିଲେ, "ଆପଣ ଏ କି ପ୍ରକାର କଥା କହୁଛନ୍ତି ?" ରିୟାର୍ଚ ସିଧାସଳଖ ଭାବରେ ତାଙ୍କ ଆଡ଼କୁ ଚାହିଁ କହିଲେ, "ଆପଣ ଯେଉଁଭଳି କଥା ଭଲଭାବରେ ବୁଝିପାରିବେ ମୁଁ ସେହିଭଳି କଥା କହୁଛି ।"

କପ୍ତାନ ତାଙ୍କ କଥାରେ ଇତସ୍ତତଃ ହୋଇପଡ଼ିଲେ । କହିଲେ, "ମି: ରିୟାର୍ଚ, ଆପଣ ମୋତେ ଭଲଭାବରେ ଜାଣିରଖିବା ଉଚିତ । ମୁଁ ବଡ଼ ନିଷ୍ଠୁର । ମୋର ମିଜାଜ ଖୁବ୍ କଡ଼ା । ଆପଣ ବର୍ତ୍ତମାନ ଯାହା କହିଲେ ମୁଁ ତାହା ସହ୍ୟ କରିପାରୁ ନାହିଁ । ଆପଣ ବୋଧହୁଏ ଅତିରିକ୍ତ ମଦ୍ୟପାନକରିଛନ୍ତି । ଆପଣ ଯଦି ଏହି ସ୍ଥାନରେ ପିଲାଟି ମରୁ ବୋଲି କହିଥାନ୍ତେ ତେବେ ଆପଣ ସୁସ୍ଥ ମସ୍ତିଷ୍କରେ ଅଛନ୍ତି ବୋଲି ଜାଣିଥାନ୍ତି ।"

ତାଙ୍କ କଥାରେ ବାଧାଦେଇ ମି. ରିୟାର୍ଚ କହିଲେ, "ପ୍ରକୃତରେ ସେ ମରିବ ।"

"ତେବେ ତାକୁ ଯେଉଁଠାରେ ରଖିବାକୁ ଆପଣ ଚାହୁଁଛନ୍ତି ସେହିଠାରେ ରଖନ୍ତୁ ।" ଏହା କହି ହୋସିଜିନ୍ ଶିଡ଼ିର ଉପରକୁ ଉଠିଗଲେ । ଅଳ୍ପ ସମୟ ପରେ ମୋତେ ବନ୍ଧନମୁକ୍ତ କରି ଯାତ୍ରୀମାନଙ୍କର ଶୋଇବା ଘରକୁ ନିଆଗଲା । ମଣିଷମାନଙ୍କର ସାନିଧ ଏବଂ ଦିବାଲୋକ ଲାଭକରି ମୋ ମନରେ ଅପାର ଆନନ୍ଦ ଜାତହେଲା । ସେଠାରେ ମୁଁ ଅନେକ ଦିନ ରହିଲି । ସେ ସମୟ ଭିତରେ ମୁଁ ମୋର ପୂର୍ବ ସ୍ୱାସ୍ଥ୍ୟ ଫେରିପାଇଲି ଓ ପାଖରେ ରହୁଥିବା ଯାତ୍ରୀମାନଙ୍କର ପରିଚୟ ମଧ ପାଇଲି । ସେ

ଲୋକଗୁଡ଼ାକ ଅତ୍ୟନ୍ତ ରୁକ୍ଷ ଓ କର୍କଶ ସ୍ୱଭାବର ଥିଲେ । ସେମାନଙ୍କ ମଧ୍ୟରୁ କେତେଜଣ ଜଳଦସ୍ୟୁମାନଙ୍କ ସହିତ ଜାହାଜ ଲୁଣ୍ଠନ କରିବା ପାଇଁ ଯାଇଥିବାର ଜାଣିଲି । ମୁଁ ଅଧିକରୁ ଅଧିକ ସମୟ ପାଇଁ ସେମାନଙ୍କ ସମ୍ପର୍କରେ ଆସିବାପରେ ଜାଣିଲି ଯେ ସେମାନଙ୍କ ଭିତରେ ଭଲ ସ୍ୱଭାବର ମଣିଷ ମଧ୍ୟ ଅଛନ୍ତି । ମୁଁ ଯେତେବେଳେ ପ୍ରଥମେ ଜାହାଜ ଉପରକୁ ଆସିଲି ମୋ ପାଖରେ ଥିବା ଟଙ୍କା ଚୋରି ହୋଇଯାଇଥିଲା । ମୋର ସେହି ଅପହୃତ ଟଙ୍କା ସେମାନଙ୍କ ଦ୍ୱାରା ଫେରିପାଇଥିଲି । ସେ ଟଙ୍କା ଫେରିପାଇ ମୁଁ ଖୁବ୍ ଆନନ୍ଦିତହେଲି । ଜାହାଜଟି କେରୋଲିନସ୍‌କୁ ଯାଉଥିଲା । କେବଳ ମୋ ବ୍ୟତୀତ ଅନ୍ୟ ସମସ୍ତେ ସେଠାକୁ ଯାତ୍ରୀ ଭାବରେ ଯାଉଥିଲେ । ସେ ସମୟରେ ସେଠାରେ ମୋ ଭଳି ପିଲାମାନଙ୍କୁ ଦାସ ରୂପେ ବିକ୍ରିକରାଯାଉଥିଲା ଏବଂ ମୋର ଦୁଷ୍ଟ କକା ସେହି ଉଦ୍ଦେଶ୍ୟରେ ମୋତେ ପଠାଇଦେଇଥିଲେ; କିନ୍ତୁ ମୁଁ ଆଶାକରିଥିଲି ଫେରିପାଇଥିବା ଟଙ୍କା ସାହାଯ୍ୟରେ ମୁଁ ନିଜକୁ ମୁକୁଳାଇପାରିବି ।

ରୋନ୍‌ସୋମ ଜାହାଜର କର୍ମଚାରୀମାନେ ରହୁଥିବା ପ୍ରକୋଷ୍ଠଟିରେ ଶୁଏ ଓ କାମକରେ । ସେ ଜାହାଜର ପ୍ରଧାନ ସହକାରୀ କର୍ମଚାରୀ ମି.ସ୍ୱାନ୍‌ଙ୍କର ନିର୍ଦ୍ଦୟତା ସଂପର୍କରେ ପ୍ରତ୍ୟହ କିଛି ନା କିଛି ନୂତନ କଥା କହି ମୋତେ ଶୁଣାଏ ଏବଂ ତାର ମାଡ଼ଖାଇଥିବା ଜାଗାଗୁଡ଼ିକ ଦେଖାଏ । ଦିନେ ରାତ୍ରି ପ୍ରାୟ ୧୧ଟା ସମୟରେ ଜଣେ ଲୋକ ଆମେ ରହିଥିବା କୋଠରିକୁ ଆସି ଚୁପଚୁପ୍ କରି କହିଲା, ''ସ୍ୱାନ୍ ଶେଷରେ ତାକୁ ମାରିଦେଇଛି ।'' ସମସ୍ତେ ଅନୁମାନ କରିନେଲେ କିଏ ମରିଛି । ଏହି ସମୟରେ କପ୍ତାନ ହୋସିଜିନ୍ ସେଠାରେ ଆସି ପହଞ୍ଚିଲେ । ସେ ଚାରିପାଖ ବୁଲି ବୁଲି ଲଣ୍ଠନ ଆଲୁଅରେ ବିଛଣାଗୁଡ଼ିକୁ ଦେଖିନେଲେ ଏବଂ ଶେଷରେ ମୋ ପାଖକୁ ଆସିଲେ । ସେ ମୋତେ କହିଁଲେଇ କହିଲେ, ''ଦେଖ ବାବୁ, ଆମ ସମସ୍ତଙ୍କର ଇଚ୍ଛା ତୁମେ ଯାଇ ଆମ ପ୍ରକୋଷ୍ଠରେ କାମକରିବ । ରୋନ୍‌ସୋମ୍ ଓ ତୁମ ଦୁହିଁଙ୍କ ବିଛଣା ବଦଳକରିଦିଆଯିବ । ତୁମେ ବର୍ତ୍ତମାନ ସେଠାକୁ ଶୀଘ୍ର ଚାଲିଯାଅ ।''

ସେ ମୋତେ କହୁଥାନ୍ତି, ଏହିପରି ସମୟରେ ଦୁଇଜଣ ନାବିକ ମୃତ ରୋନ୍‌ସୋମ୍‌କୁ ଟେକିଆଣି ସେଠାରେ ପହଞ୍ଚିଲେ । ଏହି କରୁଣ ଦୃଶ୍ୟ ଦେଖି ହୃଦୟରେ ଏକ ନିଷ୍ଠୁର ଆଘାତ ପାଇଲି । ହୋସିଜିନ୍ ନାବିକ ଦୁଇଜଣଙ୍କୁ ଦେଖି ଗର୍ଜନକରିଉଠିଲେ, ''ବାହାରିଯାଅ ! ବାହାରିଯାଅ ଏଠାରୁ !''

ମୁଁ ମୃତ ରୋନ୍‌ସୋମ୍ ଓ ନାବିକମାନଙ୍କୁ ଅତିକ୍ରମ କରି ଶିଡ଼ି ଦେଇ ଡେକ ଉପରକୁ ଗଲି । ବିକ୍ଷୁବ୍ଧ ସାଗର ବକ୍ଷରେ ଜାହାଜଟି ଭୀଷଣ ଭାବେ ଦୋହଲୁଥାଏ । ମୁଁ କୌଣସି ଆଡ଼କୁ ଦୃଷ୍ଟି ନଦେଇ ଟଳି ଟଳି ଡେକ୍ ଉପରେ ଚାଲିଥାଏ । ହଠାତ୍ ଜଣେ ନାବିକ ମୋତେ ଧରିପକାଇ ନଥିଲେ ମୁଁ ଆଉ ଅଳ୍ପକେ ସମୁଦ୍ର ଭିତରକୁ ପଡ଼ିଯାଇଥାନ୍ତି । କର୍ମଚାରୀମାନଙ୍କ ରହିବା ପ୍ରକୋଷ୍ଠଟି ଡେକ୍‌ର ଆହୁରି ଛଅଫୁଟ

ଉପରେ ଅବସ୍ଥିତ । ଭିତରେ ଗୋଟିଏ ଟେବୁଲ, କେତେଗୁଡ଼ିଏ ଚୌକି ଏବଂ ଦୁଇଟି ବିଛଣା ଥାଏ । ବିଛଣା ଦୁଇଟି ଭିତରୁ ଗୋଟିଏ କପ୍ତାନଙ୍କର ଓ ଅନ୍ୟଟି ତାଙ୍କର ପ୍ରଧାନ ସହକାରୀର । ସେ ଦୁହେଁ ପାଳିକରି ଶୁଅନ୍ତି । ଉପରୁ ତଳ ପର୍ଯ୍ୟନ୍ତ ବହୁତ କାଛଆଲମିରା ଥାଏ । ସେଗୁଡ଼ିକରେ ଜାହାଜର ଜିନିଷପତ୍ର ରଖାଯାଇଥାଏ । ଡେକ୍ ଉପରେ ଥିବା ଗୋଟିଏ ଛୋଟ ଦରଜାବାଟେ କୋଠରି ତଳକୁ ଆଉ ଗୋଟିଏ ମାଲଖାନା ଅଛି । ସବୁଠାରୁ ଉତ୍କୃଷ୍ଟ ମଦ୍ୟ ଏବଂ ମାଂସ ଏଠାରେ ରଖାହୋଇଥାଏ । ଡେକ୍ ଉପରେ ଥିବା ଦୁଇଟି କମାଣ ବ୍ୟତୀତ ଅନ୍ୟ ସବୁ ବନ୍ଧୁକ ଓ ବାରୁଦ ଏଠାରେ ରଖାଯାଇଥାଏ । ଏହାର ଦୁଇପାଖରେ ଦୁଇଟି ଛୋଟ ଝରକା ଓ ଅନ୍ୟ ଗୋଟିଏ ଝରକା ଛାତରେ ଥାଏ ।

ମୁଁ କୋଠରି ଭିତରକୁ ଆସି ଦେଖିଲି ଗୋଟିଏ ଟେବୁଲ ଧାରକୁ ଲାଗି ମି.ସ୍ୱାନ ବସିଛନ୍ତି । ତାଙ୍କ ସାମ୍ନାରେ ବ୍ରାଣ୍ଡି ବୋତଲଟି ଥୁଆହୋଇଛି । ସେ ଆକାରରେ ଦୀର୍ଘ, ଖୁବ୍ ଶକ୍ତିଶାଳୀ ଏବଂ କୃଷ୍ଣବର୍ଣ୍ଣ । ମୁଁ ତାଙ୍କ ଆଡ଼କୁ ବିଶେଷ ଦୃଷ୍ଟି ଦେଲିନାହିଁ । କିଛି ସମୟ ପରେ ପରେ କପ୍ତାନ କୋଠରି ଭିତରକୁ ପଶିଆସିଲେ । ଏହା ପରେ ପରେ ମି.ରିୟାର୍ଚ ଭିତରକୁ ଆସି କପ୍ତାନଙ୍କ ଉପରେ ଏକ କରୁଣ ଦୃଷ୍ଟି ନିକ୍ଷେପ କଲେ । ତାଙ୍କର ସେ ଚାହାଣିରୁ ପରିଷ୍କାର ଭାବରେ ସୂଚିତ ହେଲା ଯେ ରୋନ୍‌ସୋମ ମରିଯାଇଛି । ତା'ପରେ ସେ ଟେବୁଲ ପାଖରେ ଆସି ଛିଡ଼ାହେଲେ । ଏହି ସମୟରେ ସ୍ୱାନ ବ୍ରାଣ୍ଡି ବୋତଲଟିକୁ ନେବାପାଇଁ ହାତବଢ଼ାଇଲେ । ମି.ରିୟାର୍ଚ ତାଙ୍କଠାରୁ ବୋତଲଟି ଝିଙ୍କିନେଇ ଗର୍ଜିଉଠିଲେ– ''କୋଭେନେଣ୍ଟ ଜାହାଜରେ ମଦ୍ୟପାନ ଖୁବ୍ ବଢ଼ିଉଠିଲାଣି ।'' ସେ ଏହା କହି ବୋତଲଟିକୁ ଝରକାବାଟେ ସମୁଦ୍ର ଭିତରକୁ ଫିଙ୍ଗିଦେଲେ ।

ମି. ସ୍ୱାନ କ୍ରୋଧଜର୍ଜରିତ ହୋଇ ଡେଇଁପଡ଼ିଲେ । ସେ ଦୁହିଁଙ୍କ ମଝିରେ କପ୍ତାନ ଛିଡ଼ାହୋଇନଥିଲେ ସେଦିନ ରାତିରେ ସ୍ୱାନ ଦ୍ୱିତୀୟ ହତ୍ୟାକାଣ୍ଡ ଘଟାଇ ଥାଆନ୍ତା । କପ୍ତାନ ଗର୍ଜନକରି କହିଲେ, ''ଦୁଷ୍ଟ ମଦ୍ୟପୀ, ନିଜ ଜାଗାରେ ବସ । ତୁମେ ଯା ଭିତରେ କ'ଣ କରିଛ ଜାଣିଛ ? ତୁମେ ପିଲାଟିକୁ ମାରିପକାଇଛ ।''

ମି: ସ୍ୱାନ କପ୍ତାନଙ୍କ କଥା ବୁଝିଲାପରି ଜଣାଗଲା, କାରଣ ସେ ଫେରିଯାଇ ପୁଣି ବସିପଡ଼ିଲେ ଓ ସଫେଇଦେବାପାଇଁ କହିଲେ, ''ଦେଖନ୍ତୁ, ସେ ପିଲା ଏତେ ଦୁଷ୍ଟ ଯେ ମୋତେ ଗୋଟିଏ ନିତାନ୍ତ ଅପରିଷ୍କାର କପ୍ ଆଣି ବଢ଼ାଇଦେଇଛି ।''

ଏହାପରେ ଗୋଟିଏ ଦୁଷ୍ଟ ପିଲାକୁ କହିବା ପରି କପ୍ତାନ ତାର ହାତଧରି ଉଠାଇଦେଲେ ଏବଂ କହିଲେ, ''ଯାଅ, ଶୋଇପଡ଼ ।'' ହତ୍ୟାକାରୀ କ'ଣ ଟିକିଏ କହି ବୁଟ୍ ଖୋଲିଲା ଏବଂ କପ୍ତାନଙ୍କ କଥା ମାନି ଶୋଇବାକୁଗଲା ।

ଏହାପରେ କପ୍ତାନ ରୁୟାର୍ଚଙ୍କୁ କହିଲେ, ''ଆଜି ରାତିର ଘଟଣା ଯେପରି ଆଉ କେହି ନଜାଣନ୍ତି । ଆମେ କହିବୁ ଯେ ପିଲାଟି ଜାହାଜ ଉପରୁ ଖସିପଡ଼ି ମରିଗଲା ।''

ଏହା ହେଉଛି ମୋର ନୂତନ ଚାକିରିର ପ୍ରଥମ ରାତ୍ରି । ଭୋଜନ ସମୟରେ ବିଭିନ୍ନ ପ୍ରକାରର ଖାଦ୍ୟ ବାଢ଼ିବା ସଙ୍ଗେ ସଙ୍ଗେ ଦିନରାତି ସବୁବେଳେ ତିନିଜଣ କର୍ମଚାରୀଙ୍କ ପାଖକୁ ମୋତେ ମଦ ବୋତଲ ଧରି ଦୌଡ଼ିବାକୁ ପଡୁଥିଲା । 'ପୋରିଜ' ଓ ଲୁଣୀମାଂସ ଥିଲା ସେମାନଙ୍କର ପ୍ରଧାନ ଖାଦ୍ୟ । ମୋର କାମଥିଲା ସବୁଠାରୁ ସହଜ ଏବଂ କପ୍ତାନ ଓ ମି. ରିୟାର୍ଚ କେବେହେଲେ ମୋ କାମରେ ଅସହିଷ୍ଣୁ ହୋଇ ଉଠୁନଥିଲେ । ରୋନ୍‌ସୋମ୍‌ର ହତ୍ୟାକାଣ୍ଡ ଘଟାଇବା ପରେ ମି. ସ୍ୱାନ କେବେହେଲେ ସୁସ୍ଥ ମନରେ ରହୁନଥିଲେ । ଦିନଯାକ ମଦ୍ୟପାନ କରୁଥିଲେ ଓ ସବୁବେଳେ ନୀରବ ରହୁଥିଲେ । ସେ ମୋତେ ଭୟକରୁଥିବା ପରି ଜଣାପଡୁଥିଲା । ସମୟସମୟରେ ସେ ମୋତେ ରୋନ୍‌ସୋମ୍ ବୋଲି ଭାବନ୍ତି । ଥରେ ସେ ମୋତେ ରୋନ୍‌ସୋମ୍‌ର କ'ଣ ହେଲା ବୋଲି ପଚାରିଲେ । କହିଲେ, ''ତୁମକୁ ଆଶ୍ଚର୍ଯ୍ୟ ଲାଗିପାରେ, କିନ୍ତୁ ମୋର ମନ ତା ପାଇଁ ଖୁବ୍ ଦୁଃଖିତ ହେଉଛି ।''

ଯେତେଦିନ ସେଠାରେ କଟାଇଲି ମୋତେ କଷ୍ଟ ଲାଗୁନଥିଲା । ମାତ୍ର ମୋର ଭବିଷ୍ୟତ କଥା ଭାବି ଚିନ୍ତିତ ହେଉଥିଲି । ମୁଁ ଜାଣିଥିଲି ଯେ, ଖୁବ୍ ଶୀଘ୍ର ମୋତେ ଧୂଆଁପତ୍ର ଜମିରେ କ୍ରୀତଦାସ ରୂପେ କାମ କରିବାକୁ ପଡ଼ିବ । ଦିନ ବିତିଯିବା ସଙ୍ଗେ ସଙ୍ଗେ ମୁଁ ଅଧିକରୁ ଅଧିକ ବିମର୍ଷ ହୋଇଉଠିଲି । କାମର ଚାପ ଭିତରେ ରହିବାକୁ ମୋତେ ଭଲଲାଗୁଥାଏ; କାରଣ ସେହି ଚାପ ଭିତରେ ଥାଇ ମୁଁ ଦୁଶ୍ଚିନ୍ତାରୁ ମୁକ୍ତିପାଏ ।

## ସୁନାପେଟିପିନ୍ଧା ମଣିଷ

ଏକ ସପ୍ତାହରୁ ଅଧିକ କାଳ ବିତିଗଲା । ଏହି ସମୟ ଭିତରେ କୋଭେନେଣ୍ଟ ଜାହାଜକୁ ନିରବଚ୍ଛିନ୍ନ ଭାବରେ ଖରାପ ପାଗ ଭିତର ଦେଇ ଗତି କରିବାକୁ ପଡୁଥାଏ । ତେଣୁ ଜାହାଜ ଖୁବ୍ ମନ୍ଥର ଗତିରେ ଅଗ୍ରସର ହେଉଥାଏ । ଜାହାଜର କର୍ମଚାରୀ ଓ ଯାତ୍ରୀମାନେ ସବୁବେଳେ ଡେକ୍ ଉପରେ ଛିଡ଼ାହୋଇ ନିକଟସ୍ଥ ଉପକୂଳରେ ଢେଉର ମାଡ଼କୁ କାନଡେରିଥାନ୍ତି । ରାତ୍ର ପ୍ରାୟ ୧୦ଟା ହେବ । କପ୍ତାନ୍ ଓ ମି. ରିୟାର୍ଚଙ୍କୁ ମୁଁ ସେମାନଙ୍କର ରାତିର ଖାଦ୍ୟ ପରଶିଦେଉଥାଏ । ଠିକ୍ ଏହିପରି ସମୟରେ ଜାହାଜଟି କୌଣସି ଏକ ସ୍ଥାନରେ ବାଜିବା ଫଳରେ ଭୀଷଣ ଶବ୍ଦହେଲା । ଶବ୍ଦ କାନରେ ବାଜିବା ମାତ୍ରେ ସେ ଦୁଇଜଣ ଖାଇବା ଜାଗାରୁ ଡେଇଁଉଠିଲେ । ମି.ରିୟାର୍ଚ କହିଲେ, ''ଜାହାଜ ବୋଧହୁଏ କୂଳରେ ବାଜିଲା ।'' ମାତ୍ର ହୋସିଜିନ୍ କହିଲେ, ''ନା, ଜାହାଜଟିର ନିଶ୍ଚୟ ଗୋଟିଏ ଡଙ୍ଗା ସହିତ ଧକ୍କା ହୋଇଛି ।''

କପ୍ତାନଙ୍କ କଥା ହିଁ ସତ ହେଲା । ଆମ୍ଭେମାନେ ଡେକ୍ ଉପରକୁ ଯାଇ ଦେଖିଲୁ ଯେ, ଜାହାଜଟି ଗୋଟିଏ ଛୋଟ ଡଙ୍ଗା ଦେହରେ ବାଜିଛି । ଆଘାତ ପାଇବା ସଙ୍ଗେ

ସଙ୍ଗେ ଡଙ୍ଗାଟି ମାତ୍ର ଜଣେ ଯାତ୍ରୀ ବ୍ୟତୀତ ଅନ୍ୟ ସମସ୍ତଙ୍କୁ ନେଇ ବୁଡ଼ିଯାଇଛି । ଧକ୍କା ହେବା ସମୟରେ ଏହି ଯାତ୍ରୀଜଣକ ଡଙ୍ଗାରୁ ସମୁଦ୍ର ଗର୍ଭକୁ ଛିଟିକିପଡ଼ିଲେ ଏବଂ କୌଣସିମତେ ଆମ ଜାହାଜ ପାର୍ଶ୍ୱକୁ ଜାବୁଡ଼ି ଧରିଲେ । କପ୍ତାନ ତାଙ୍କୁ ଉଦ୍ଧାରକରି ନିଜ କୋଠରିକୁ ଆଣିଲେ ।

ମୁଁ ଦେଖିଲି ସେ ବେଶ୍ ମୂଲ୍ୟବାନ ପୋଷାକ ପିନ୍ଧିଛନ୍ତି ଓ ତାଙ୍କର ଶରୀରର ଗଠନ ଖୁବ୍ ସୁନ୍ଦର । ମୁଖମଣ୍ଡଳ ପ୍ରଫୁଲ୍ଲ ଏବଂ ସରଳ । ସେ କୋଟ୍ କାଢ଼ିବା ପରେ ଦୁଇଟି ରୌପ୍ୟ ପିସ୍ତଲ୍ କାଢ଼ି ଟେବୁଲ ଉପରେ ରଖିଲେ । ଏକ ସୁଦୀର୍ଘ ତରବାରି ତାଙ୍କ ଅଣ୍ଟାରେ ବନ୍ଧାହୋଇଥାଏ ।

କପ୍ତାନ ହୋସିଜିନ୍ କିଛି ସମୟ ଧରି ତାଙ୍କୁ ନିରୀକ୍ଷଣ କଲାପରେ କହିଲେ, ''ମୁଁ ଆପଣଙ୍କର ଦୁର୍ଦ୍ଦଶାଗ୍ରସ୍ତ ଡଙ୍ଗାଟି ପାଇଁ ବାସ୍ତବିକ ଦୁଃଖିତ ।''

ଅପରିଚିତ ଯାତ୍ରୀଜଣକ କହିଲେ, ''ସେହି ଡଙ୍ଗା ସହିତ କେତେଜଣ ଭଲ ମଣିଷଙ୍କର ସଲିଳସମାଧି ହେଲା । ଡଙ୍ଗାର ମୂଲ୍ୟ ସେ ବିଚାରରେ କିଛି ନୁହେଁ । ସେମାନେ ମୋ ପାଇଁ ପ୍ରାଣହରାଇଲେ ।''

କ୍ରୋଧାନ୍ୱିତ ହୋଇ କପ୍ତାନ ପଚାରିଲେ, ''ସେମାନେ ସବୁ ଫ୍ରାନ୍ସରୁ ଆସୁଥିଲେ କି ?'' ନବାଗତ ବ୍ୟକ୍ତି କହିଲେ, ''ଓଃ, ଆପଣ ଏହାର ଉତ୍ତର ଚାହୁଁଛନ୍ତି !'' ଏହାକହି ସେ ଟେବୁଲ ଉପରୁ ପିସ୍ତଲ୍ ଉଠାଇଲେ ।

ହୋସିଜିନ୍ କହିଲେ, ''ରାଗିଯାନ୍ତୁନାହିଁ । ସ୍କଟ୍‌ଲାଣ୍ଡ ପିତାର ଔରସ ଜାତ ଏବଂ ଫ୍ରାନ୍ସଦେଶୀୟ କୋଟ୍ ପରିଧାନ କରିଥିବା ଅନେକ ଲୋକ ଆଜିକାଲି ଦେଖିବାକୁ ପାଉଛି । ମୁଁ ନିଜେ ଜଣେ ହୁଇଗ୍; କିନ୍ତୁ କୌଣସି ଲୋକକୁ ବିପଦଗ୍ରସ୍ତ ହେବାର ଦେଖିଲେ ମୋତେ ଭଲଲାଗେନାହିଁ ।''

ତା'ପରେ ନବାଗତ ଜେକୋବାଇଟ୍ ଜଣଙ୍କ କହିଲେ, ''ମୁଁ ଆପଣଙ୍କ ସହିତ ସାଧୁସରଳ ଭାବରେ ଚଳିବି । ୧୭୪୫ ମସିହାରେ ଯେଉଁ ଭଦ୍ରଲୋକମାନେ ବିପନ୍ନ ହୋଇଥିଲେ ମୁଁ ସେମାନଙ୍କ ମଧ୍ୟରୁ ଜଣେ । ମୁଁ ଲାଲକୋଟ୍‌ଧାରୀଙ୍କ ହାତରେ ପଡ଼ିଲେ ପୁଣି ଆଉଥରେ ବିପଦାପନ୍ନ ହେବି । ଆଜି ରାତିରେ ମୁଁ ଫ୍ରାନ୍ସ ଫେରି ଯାଉଥିଲି; ମାତ୍ର ଫରାସୀ ଦେଶର ଯେଉଁ ଜାହାଜଟି ମୋତେ ନେଇଯିବାକୁ ଥିଲା ସମ୍ଭବତଃ ଅତ୍ୟଧିକ କୁହୁଡ଼ି ଯୋଗୁଁ ଆମମାନଙ୍କୁ ଠାବ କରିପାରିଲାନାହିଁ । ମୋର ବିଶେଷ ଅନୁରୋଧ ଆପଣ ଅନୁଗ୍ରହକରି ମୋତେ ନିରାପଦରେ ରଖନ୍ତୁ । ଆପଣଙ୍କର ଏହି ସାହାଯ୍ୟ ପାଇଁ ମୁଁ ଯଥେଷ୍ଟ ଅର୍ଥ ଦେବି ।'' ଏହା କହି ସେ ତାଙ୍କ ଅଣ୍ଟାରେ ବନ୍ଧାହୋଇଥିବା ଟଙ୍କା ଥଳି ଫିଟାଇ କେତେଗୋଟି ଗିନି ହୋସିଜିନ୍‌ଙ୍କୁ ଦେଖାଇଲେ । ଲୋଭୀ କପ୍ତାନ କହିଲେ, ''ତହିଁରୁ ଅର୍ଦ୍ଧେକ ମିଳିଲେ ମୁଁ ଆପଣଙ୍କୁ ସାହାଯ୍ୟ କରିବି ।'' ନବାଗତ କହିଲେ, ''ମୁଁ ଏହାର ଅର୍ଦ୍ଧେକ ଦେଇପାରିବିନାହିଁ; କାରଣ ଏ ଧନ ମୋର ନୁହେଁ । ଆପଣ ମୋତେ ଲିନେଲ୍‌ଚଠାରେ ପହଞ୍ଚାଇଦେଲେ ମୁଁ ଷାଠିଏଟି

ଗିନି ଦେବି ।'' କପ୍ତାନ ଏଥିରେ ସମ୍ମତହେଲେ । ଆନନ୍ଦରେ ଦିହେଁ ହାତ ମିଳାମିଳିହେଲେ ଏବଂ ତତ୍ପରେ କପ୍ତାନ ଖୁବ୍ ବ୍ୟସ୍ତହୋଇ ସେହି କୋଠରି ଛାଡ଼ି ଅନ୍ୟତ୍ର ଚାଲିଗଲେ ।

ସେହି ସମୟରେ ଅନେକ ନିର୍ବାସିତ ସ୍କଟ୍‌ଲାଣ୍ଡୀୟ ଭଦ୍ରଲୋକ ସେମାନଙ୍କର ବନ୍ଧୁବାନ୍ଧବମାନଙ୍କୁ ସାକ୍ଷାତ କରିବା ପାଇଁ ଏବଂ ଅର୍ଥ ସଂଗ୍ରହ କରିବା ପାଇଁ ଗୁପ୍ତ ଭାବରେ ଫ୍ରାନ୍‌ସରୁ ସ୍କଟଲାଣ୍ଡକୁ ଆସୁଥାନ୍ତି । ଆଇନଅମାନ୍ୟକାରୀ ଭୂମି ମାଲିକମାନଙ୍କର ରୟତମାନେ ତାଙ୍କ ନିକଟକୁ ସେମାନଙ୍କର ଟଙ୍କା ଏହିପରି ଛଦ୍ମବେଶୀଙ୍କ ହାତରେ ପଠାଉଥାନ୍ତି । ଏହି ଭଦ୍ରଲୋକମାନେ ନିଜନିଜର ପ୍ରଭୁଙ୍କୁ ସାହାଯ୍ୟ କରିବା ପାଇଁ କିପରି ଦୁଃସାହସିକ କାମ କରିଥାନ୍ତି ମୁଁ ଅନେକ ସମୟରେ ସେସବୁ ଶୁଣିବାକୁ ପାଏ । ବର୍ତ୍ତମାନ ସେହିପରି ଜଣେ ଆଇନ ଅମାନ୍ୟକାରୀ ଭଦ୍ରଲୋକଙ୍କୁ ଆଗରେ ପାଇ ଆଗ୍ରହର ସହିତ ତାଙ୍କୁ ଦେଖୁଥାଏ ।

ମୁଁ ତାଙ୍କ ଆଗରେ କିଛି ମାଂସ ରଖି ପଚାରିଲି, ''ତା'ହେଲେ ଆପଣ କ'ଣ ଜଣେ ଜେକୋବାଇଟ୍ ?'' ସେ ମୋ ପ୍ରଶ୍ନର ଉତ୍ତର ଦେଇ କହିଲେ, ''ହଁ... ଆଉ ତୁମେ କ'ଣ ଜଣେ ହୁଇଗ୍ ?''

ମି: କେମ୍ପବେଲ୍‌ଙ୍କଦ୍ୱାରା ମୁଁ 'ହୁଇଗ୍' ସମ୍ପ୍ରଦାୟଭୁକ୍ତ ହୋଇଥିଲେ ହେଁ ତାଙ୍କୁ ବିବ୍ରତ ନ କରିବା ପାଇଁ 'ହଁ' କିମ୍ବା 'ନା' ପରିଷ୍କାର ଭାବରେ କିଛି ଉତ୍ତର ଦେଲିନାହିଁ । ସେ କହିଲେ, ''ସେ କଥାରୁ କ'ଣ ମିଳିବ ? ମୁଁ ଯେତେବେଳେ ଷାଠିଏ ଗିନି ଦେଇଛି ମୋତେ ଭଲ ପାନୀୟ ଯୋଗାଇଦିଅ ।''

କହିଲି, ''ତା' ହେଲେ ମୁଁ ଯାଇ ଚାବିକାଠିଟି ଆଣୁଛି ।'' ଏହା କହି ମୁଁ ଡେକ୍ ଉପରକୁ ଚାଲିଗଲି । ଦେଖିଲି କପ୍ତାନ, ରିୟର୍ଚ ଓ ସ୍ୱାନ୍ ତିନିହେଁ ଡେକ୍‌ରେ ଠିଆହୋଇ ଗୋପନରେ କ'ଣ ଆଲୋଚନା କରୁଛନ୍ତି । ମୁଁ ଧୀରେ ଧୀରେ ସେମାନଙ୍କ ନିକଟବର୍ତ୍ତୀ ହେବାରୁ ଶୁଣିଲି ମି: ରିୟର୍ଚ କହୁଛନ୍ତି, ''ଆମେ କ'ଣ ତାଙ୍କୁ କୋଠରି ଭିତରୁ କାଢ଼ିଦେଇ ପାରିବା ନାହିଁ ?'' ହୋସିଜିନ୍ କହିଲା, ''ନା, ସେ ଯେଉଁଠାରେ ଅଛି ସେହିଠାରେ ରହିଲେ ଭଲହେବ । ତରବାରି ଚଳାଇବା ପାଇଁ ସେଠାରେ ତାକୁ ଜାଗା ମିଳିବ ନାହିଁ । ତା'ସହିତ କଥାବାର୍ତ୍ତା କରୁ କରୁ ହଠାତ୍ ତାକୁ ଧରି ଆୟତ୍ତ କରିବାକୁ ହେବ । ତେବେ ଗୋଟିଏ କଥା– ଆମେ ପିସ୍ତଲ୍‌ଗୁଡ଼ିକ ଆଣିବା କିପରି ?''

ମୁଁ ଜାଣିପାରିଲି ସେମାନେ ଏକ ଚକ୍ରାନ୍ତ କରୁଛନ୍ତି । ମନରେ ସାହାସ ବାନ୍ଧି ଆଗେଇଯାଇ କହିଲି, ''କପ୍ତାନସାହେବ, ସେହି ଭଦ୍ରଲୋକ ଆଉ କିଛି ବ୍ରାଣ୍ଡି ମାଗୁଛନ୍ତି– ମୋତେ ଚାବିକାଠିଟି ଦେବେ କି ?'' ସେମାନେ ସମସ୍ତେ ବୁଲିପଡ଼ିଲେ ।

କପ୍ତାନଙ୍କୁ ଏକ ବୁଦ୍ଧି ଦିଶିଲା । ସେ କହିଲେ, ''ଦେଖ ଡେଭିଡ୍, ସେହି ଦୁଷ୍ଟ ଲୋକଟା ରାଜାଙ୍କର ଶତ୍ରୁ ଏବଂ ଆମ ଜାହାଜ ପକ୍ଷରେ ଘୋର ବିପଦ । ବର୍ତ୍ତମାନ ଆମର ଅସୁବିଧା ହେଉଛି ଯେ, ଆମର ପିସ୍ତଲଗୁଡ଼ିକ ସେହି କୋଠରିରେ

ରହିଯାଇଛି । ଆମମାନଙ୍କ ମଧ୍ୟରୁ କେହି ଯାଇ ଆଣିଲେ ସେ ସନ୍ଦେହକରିବ; କିନ୍ତୁ ତୁମପରି ପିଲା ଜଣେ ତା ଭିତରୁ ଗୋଟିଏ କିମ୍ବା ଦୁଇଟି ପିସ୍ତଲ କାଢ଼ିଆଣିଲେ ସେ କିଛି ଜାଣିପାରିବନାହିଁ । ମନେରଖ ଡେଭିଡ଼୍, ତୁମେ ଯଦି ଆମକୁ ଏ ଦିଗରେ ସାହାଯ୍ୟ କରିବ ତେବେ କରୋଲିନସ୍ ପହଞ୍ଚିବା ପରେ ମୁଁ ନିଶ୍ଚୟ ତୁମକୁ ସାହାଯ୍ୟକରିବି ।''

ମୁଁ ତାଙ୍କ କହିବାନୁଯାୟୀ କାମ କରିବି ବୋଲି ସ୍ୱୀକୃତ ହେବାରୁ ସେ ମୋତେ ଆଲମିରା ଚାବିକାଠି ଦେଲେ । ମୁଁ ଧୀରେ ଧୀରେ ଫେରି କ'ଣ କରିବି ବୋଲି ଭାବୁଥାଏ । ସେମାନେ ଯେ ନିତାନ୍ତ ଦୁର୍ଦ୍ଧର୍ଷ ଏବଂ ବଦମାସ୍ ଏହା ମୁଁ ନିଶ୍ଚିତ ଭାବରେ ଜାଣିଥାଏ । ସେମାନେ ମୋତେ ଚୋରିକରି ଆଣିଛନ୍ତି ଏବଂ ନିରୀହ ରୋନ୍‌ସୋମକୁ ନିର୍ମମ ଭାବରେ ହତ୍ୟାକରିଛନ୍ତି । ବର୍ତ୍ତମାନ ସେମାନେ ଆଉ ଜଣେ ଭଲମଣିଷକୁ ହତ୍ୟା କରିବା ପାଇଁ ବସିଛନ୍ତି । କିନ୍ତୁ ସେ ଓ ମୁଁ ମିଶି ଜାହାଜର ଏତେ ଯାତ୍ରୀଙ୍କ ବିରୁଦ୍ଧରେ କ'ଣ କରିପାରିବୁ ?

ମୁଁ କୋଠରି ଭିତରକୁ ପ୍ରବେଶକଲି । ଦେଖିଲି ଜେକୋବାଇଟ୍ ଜଣକ ଖାଇଲାଗିଛନ୍ତି । ସେ ଖାଉଥିବା ଟେବୁଲ ପାଖକୁ ଯାଇ ତାଙ୍କ କାନ୍ଧ ଉପରେ ହାତରଖିଲି ଓ ପଚାରିଲି, ''ଆପଣ ଏଠାରେ ପ୍ରାଣ ହରାଇବାକୁ ଚାହାନ୍ତି କି ?''

ମୋ କଥା ଶୁଣି ସେ ବିସ୍ମିତ ହୋଇ ମତେ ଚାହିଁଲେ । କହିଲି, ''ଆପଣ ଏଠାରେ ଯେଉଁମାନଙ୍କୁ ଦେଖୁଛନ୍ତି, ସେମାନେ ସମସ୍ତେ ଜଣେ ଜଣେ ଘାତକ । ଯା' ଭିତରେ ସେମାନେ ଜଣେ ପିଲାକୁ ହତ୍ୟାକରିଛନ୍ତି ଏବଂ ବର୍ତ୍ତମାନ ଆପଣଙ୍କୁ ହତ୍ୟାକରିବାକୁ ଚକ୍ରାନ୍ତ ହେଉଛି ।''

ସେ ପଚାରିଲେ, ''ଆଚ୍ଛା ଡେଭିଡ୍, ତୁମେ ମୋତେ ସାହାଯ୍ୟ କରିପାରିବ ?''

କହିଲି, ''ମୁଁ ନିଶ୍ଚୟ ଆପଣଙ୍କୁ ସାହାଯ୍ୟ କରିବି । ମୁଁ ଚୋର କିମ୍ବା ଘାତକ ନୁହେଁ । ମୁଁ ସ'ପରିବାରର ଡେଭିଡ୍ ବେଲ୍‌ଫାଓ୍ୱର୍ ।'' ସେ ଗର୍ବର ସହିତ କହିଲେ, ''ଭଲକଥା । ମୋର ନାମ ଷ୍ଟୁଆର୍ଟ । ମୋର ନାମ ଜଣେ ରାଜାର ନାମପରି, ଯଦିଓ ମୋତେ ଲୋକେ ଆଲାନ୍‌ବ୍ରେକ ବୋଲି ଡାକନ୍ତି ।''

ଅଧିକ କଥାବାର୍ତ୍ତା ହେବାପାଇଁ ଆମର ସମୟ ନଥାଏ । ପ୍ରତିରକ୍ଷା ପାଇଁ ଆମେ କୋଠରି ଭିତରେ ଚାରିଆଡ଼ ବୁଲି ଦେଖିଲୁଁ । ସେ କୋଠରିଟି ଖୁବ୍ ସୁଦୃଢ଼ ଭାବରେ ତିଆରିହୋଇଥାଏ । ସେଥିରେ ସର୍ବମୋଟ ପାଞ୍ଚଟି ରାସ୍ତା– ଦୁଇଟି ଦରଜା, ଦୁଇଟି ଝରକା ଏବଂ ଉପରେ ଥିବା ଅନ୍ୟ ଏକ ଆଲୋକ ମାର୍ଗ । ଆଲାନ୍ ଏହା ଭିତରୁ ଗୋଟିଏ ଦରଜା ଖୋଲାରଖିଲେ ଯେପରି ସେ ଶତ୍ରୁକୁ ଦେଖିପାରିବେ । ମୁଁ ଟେବୁଲ ପାଖରେ ଠିଆହୋଇ ଆଲମାରିରୁ ବାହାର କରି ଆଣିଥିବା ପିସ୍ତଲଗୁଡ଼ିକରେ ଗୁଳି ଭର୍ତ୍ତି କରିବାରେ ଲାଗିଲି । ସେ ନିଜେ ତରବାରିଟି ବାହାରକରି କୋଠରି ଭିତରେ ତାହା ବୁଲାଇବାକୁ ଚେଷ୍ଟାକଲେ ଏବଂ ଦୁଃଖିତ ହୋଇ କହିଲେ, ''ଏ ଅପ୍ରଶସ୍ତ

କୋଠରି ଭିତରେ କେବଳ ତରବାରିର ଅଗ୍ରଭାଗକୁ କାମରେ ଲଗାଇପାରିବି । ଆଚ୍ଛା, ଆମ ବିରୁଦ୍ଧରେ ସେମାନେ କେତେଜଣ ଅଛନ୍ତି ?''

କହିଲି, ''ସେମାନଙ୍କର ସଂଖ୍ୟା ପନ୍ଦର ।'' ଆଲାନ୍ କହିଲେ, ''ଦେଖ, ଆମେ ତ ସେ ସଂଖ୍ୟା କମ୍ କରିପାରିବାନାହିଁ । ତେବେ ତୁମେ ମୋ କଥା ମନଦେଇ ଶୁଣ । ମୁଁ ସାମ୍ନାରେ ଦରଜା ଜଗୁଛି । ମୁଁ ପଡ଼ି ନ ଯିବା ପର୍ଯ୍ୟନ୍ତ ମୋ ଆଡ଼କୁ ମୁହଁକରି କେବେହେଲେ ଗୁଳି ଫୁଟାଇବ ନାହିଁ । ମୋ ସାମ୍ନାକୁ ଦଶଜଣ ଶତ୍ରୁ ଆକ୍ରମଣ କରିବା ମୋ ପକ୍ଷରେ ଯେତେ ବେଶି ବିପଜ୍ଜନକ ନୁହେଁ, ମୋ ପଛପଟୁ ତୁମପରି ଜଣେ ବନ୍ଧୁ ଗୁଳିଫୁଟାଇବା ତଦପେକ୍ଷା ଅଧିକ ବିପଜ୍ଜନକ ହେବ । ଦେଖ ଡେଭିଡ୍, ତୁମର କାମ ହେଉଛି ଏଇ ଝରକାଗୁଡ଼ିକୁ ଏବଂ ବନ୍ଦଥିବା ଦରଜାଟିକୁ ଜଗିବା । ଯଦି ସେମାନେ ରାସ୍ତା ଭାଙ୍ଗି ଆସିବାକୁ ଚେଷ୍ଟାକରନ୍ତି ତେବେ ସେମାନଙ୍କୁ ଗୁଳି କରିବ । ଛାତକଡ଼ରେ ଥିବା ଆଲୋକମାର୍ଗ ଉପରେ ମଧ୍ୟ ଦୃଷ୍ଟି ରଖିବ । ସେହି ରାସ୍ତାବାଟେ ମଧ୍ୟ ସେମାନେ ଆସିବାକୁ ଚେଷ୍ଟାକରିପାରନ୍ତି ।''

ମୋର ଜିଭ ଶୁଖିଯାଉଥାଏ । ଆକ୍ରମଣକାରୀଙ୍କ ସଂଖ୍ୟା କଥା ଭାବିଲାବେଳକୁ ମୋର ହୃତ୍‌କମ୍ପ ଜାତହେଉଥାଏ । ବୀର ସାଜିବାର ଆକାଂକ୍ଷା ମୋ ମନରେ ନଥାଏ; କିନ୍ତୁ ସ୍ୱୀକୃତି ଯେତେବେଳେ ଦେଇଛି ଆଉ ପଛଘୁଞ୍ଚା ଦେବି କିପରି ? ତେଣୁ ଆସନ୍ନ ଯୁଦ୍ଧକୁ ଅପେକ୍ଷା କରି ରହିଲି ।

## କୋଠରି ଭିତରେ ଯୁଦ୍ଧ

ମୋର ଫେରିବାରେ ଡେରି ଦେଖି କର୍ମଚାରୀମାନେ ମୋତେ ଖୋଜିବାକୁ ଆସିଲେ । ଦରଜା ପାଖରେ ପ୍ରଥମେ କପ୍ତାନଙ୍କ ମୁହଁ ଦେଖାଗଲା । ଆଲାନ୍ ତାଙ୍କ ଆଡ଼କୁ ତରବାରି ଦେଖାଇ ଚିତ୍କାର କରି କହିଲେ, ''ସେହିଠାରେ ଛିଡ଼ାହୁଅ ।''

ସେ କହିଲେ, ''ଏହାର ଅର୍ଥ କ'ଣ ମୁଁ କିଛି ବୁଝିପାରୁନାହିଁ । ଜଣେ ଅତିଥି ପକ୍ଷରେ ଏ ପ୍ରକାର ଆଚରଣ ବିହିତ ନୁହେଁ ।''

ଆଲାନ୍ କହିଲେ, ''ତୁମର ଚକ୍ରାନ୍ତ ଜାଣିଛି । ତୁମର ସହଚରମାନଙ୍କୁ ଡାକି ଆକ୍ରମଣର ଆୟୋଜନ କର— ମୁଁ ପ୍ରସ୍ତୁତ ଅଛି ।'' କପ୍ତାନ ଆଲାନ୍‌କୁ କିଛି ନକହି ମୋ ଆଡ଼କୁ ନିଷ୍ଠୁର ଭାବରେ ଚାହିଁ କହିଲେ, ''ଡେଭିଡ୍, ଏ କଥା ମୋର ମନେ ରହିଲା ।''

କପ୍ତାନ ସେଠାରୁ ଚାଲିଗଲେ । ଆଲାନ୍ କହିଲେ, ''ଶୀଘ୍ର ପ୍ରସ୍ତୁତ ହୁଅ । ଆକ୍ରମଣର ସମୟ ନିକଟ ହୋଇଆସୁଛି ।'' ସେ ଦରଜା ପାଖରେ ଛିଡ଼ାହୋଇ

ରହିଲେ । ତାଙ୍କର ଗୋଟିଏ ହାତରେ ସୁତୀକ୍ଷ୍ଣ ଛୁରିକା ଓ ଅନ୍ୟହାତରେ ତରବାରି । ବାହାରେ ମଣିଷର କଣ୍ଠସ୍ୱର ଏବଂ ତରବାରିର ଝଣଝାଣ୍ ଶବ୍ଦ ମୋର କର୍ଣ୍ଣଗୋଚର ହେଲା । କାହିଁକି କେଜାଣି ମୁଁ ଭୟଭୀତ ହେଲିନାହିଁ । ମାତ୍ର ମନରେ ମୋର ଜୟଲାଭର ଆଶା ତିଳେହେଲେ ନଥାଏ । ନୈରାଶ୍ୟ ଏବଂ କ୍ରୋଧର ବଶବର୍ତ୍ତୀ ହୋଇ ମୁଁ ଶେଷ ନିଶ୍ୱାସ ଛାଡ଼ିବା ପର୍ଯ୍ୟନ୍ତ ଯୁଦ୍ଧ କରିବା ପାଇଁ ବଦ୍ଧପରିକର ହୋଇଥାଏ ।

ଯୁଦ୍ଧ ଆରମ୍ଭହେଲା । ଆଲାନ୍ ଗର୍ଜ୍ଜନ କରିଉଠିଲେ । ଦେଖିଲି ମି: ସ୍ୱାନ୍ ଆଲାନ୍‌ଙ୍କ ତରବାରି ସହିତ ନିଜ ତରବାରି ମିଳାଇଲେ; ମାତ୍ର ଅଳ୍ପ ସମୟ ଭିତରେ ଆଲାନ୍‌ଙ୍କ ତରବାରି ସ୍ୱାନ୍‌ଙ୍କ ଶରୀର ବିଦ୍ଧକଲା ।

ଆଲାନ୍ ପାଟିକରି ମୋତେ କହିଲେ– ତୁମେ ଝରକା ପ୍ରତି ଦୃଷ୍ଟିଦିଅ । ମୁଁ ଦେଖିଲି ପାଞ୍ଚଜଣ ଲୋକ ଅନ୍ୟ ଦରଜା ଆଡ଼କୁ ଦ୍ରୁତଗତିରେ ଚାଲିଯାଉଛନ୍ତି । ଜୀବନରେ ମୁଁ କେବେହେଲେ ପିସ୍ତଲ ଫୁଟାଇନଥିଲି; କିନ୍ତୁ ସେମାନେ ଆକ୍ରମଣ ପାଇଁ ପ୍ରସ୍ତୁତ ହେଉଥିବା ଦେଖି ପିସ୍ତଲ ଫୁଟାଇଦେଲି । ଜଣେ ଆକ୍ରମଣକାରୀ ଚିତ୍କାରକରିଉଠିଲା । ଏହାପରେ ଆଉ ଦୁଇଥର ଗୁଳି ଚଳାଇବାରୁ ସେମାନେ ଭୟରେ କିଏ କେଉଁଆଡ଼େ ପଳାଇଲେ ।

ଆମେ ଦୁହେଁ କିଛି ସମୟ ପାଇଁ ବିଶ୍ରାମନେଲୁ । ମାତ୍ର କାନଡେରି ଅପେକ୍ଷା କରିଥାଉ । ଆଲାନ୍ ଯେଉଁ ପାଖରେ ଥିଲେ ସେହି ପାଖରେ ପାଦଶବ୍ଦ ଶୁଭିଲା । ଛାତ ଉପରେ କେହି ଜଣେ ଧୀର ଭାବରେ ଉଠିଲା । ତା'ପରେ ହୁଇସିଲ୍ ବାଜିଲା ଓ ଦ୍ୱିତୀୟ ଥର ପାଇଁ ଆକ୍ରମଣ ଆରମ୍ଭହେଲା । ପାଞ୍ଚଜଣ ଲୋକ ଠେଲିପେଲି ଦରଜାବାଟେ ପଶିଲେ ଓ ଆଲାନ୍‌ଙ୍କୁ ଅତିକ୍ରମକରି ଆଗେଇଆସିଲେ । ଠିକ୍ ଏହି ସମୟରେ ଛାତ ଉପରେ ଥିବା ଆଲୋକ ମାର୍ଗ ବାଟରେ ଆଉ ଜଣେ ଲୋକ କୋଠରି ଭିତରକୁ ପଶିଆସିଲା । ସେ ତା'ର ତରବାରି ଟେକିବାବେଳକୁ ମୁଁ ପିସ୍ତଲ ଫୁଟାଇଲି । ଏକ ଭୟାନକ ଚିତ୍କାରକରି ସେ ଚଟାଣ ଉପରେ ଟଳିପଡ଼ିଲା । ସେହି ବାଟରେ ଆଉ ଜଣେ ଲୋକ ପଶିଆସୁଥିବା ଦେଖି ମୁଁ ଆଉଥରେ ଗୁଳି ଚଳାଇଲି । ସେ ପ୍ରଥମ ଲୋକ ପାଖରେ ମରିପଡ଼ିଲା । ମୁଁ ମୋର ଆତ୍ମରକ୍ଷା ପାଇଁ ମାତ୍ର ଗୁଳି ଚଳାଉଥିଲି– ଏହି କାର୍ଯ୍ୟରେ ମୋର ସାହସିକତା ଆଦୌ ନଥାଏ । ମୁଁ ଭୟରେ ପ୍ରାୟ ମୂର୍ଚ୍ଛିତ ହୋଇଆସୁଥାଏ । ଏହି ସମୟରେ ଆଲାନ୍‌ଙ୍କର ଚିତ୍କାର ମୋତେ ଜାଗ୍ରତକଲା । ଦେଖିଲି ଜଣେ ଲୋକ ତାଙ୍କ ଅଣ୍ଟାକୁ ଜାବୁଡ଼ିଧରିଛି ଏବଂ ଅନ୍ୟ ଜଣେ ତରବାରିଦ୍ୱାରା ଆକ୍ରମଣ କରିବାକୁ ଉଦ୍ୟତ । ଦରଜା ପାଖରେ ଅନ୍ୟ ନୌ-ଯାତ୍ରୀମାନେ ଜମାହୋଇଛନ୍ତି । ଆଲାନ୍ ନିଜର ଛୁରୀରେ ଲୋକଟିକୁ ହତ୍ୟାକଲେ ଏବଂ ଏକ ମାରଣା ଷଣ୍ଢପରି ଗର୍ଜ୍ଜନକରି ଅନ୍ୟମାନଙ୍କୁ ଆକ୍ରମଣ କରିବା ପାଇଁ

ମାଡ଼ିଗଲେ । ଲୋକଗୁଡ଼ାକ ପଡ଼ିଉଠି ଧାଇଁଲେ । ସେମାନଙ୍କୁ କିଛି ଦୂର ପର୍ଯ୍ୟନ୍ତ ଗୋଡ଼ାଇନେଇ ସେ ନିଜ କୋଠରିକୁ ଫେରିଆସିଲେ ।

ଯୁଦ୍ଧ ଶେଷହେଲା । ଆମ କୋଠରି ଭିତରେ ତିନିଜଣ ଲୋକ ମରି ପଡ଼ିଥାନ୍ତି । ଦରଜା ପାଖରେ ଅନ୍ୟ ଜଣେ ମୁମୂର୍ଷୁ ଅବସ୍ଥାରେ ପଡ଼ିଥାଏ । ଆଲାନ ଏବଂ ମୁଁ ଅନାହତ ଥାଇ ଯୁଦ୍ଧରେ ବିଜୟଲାଭକଲୁ । ଆଲାନ୍ ମୋତେ ଆନନ୍ଦରେ ଆଲିଙ୍ଗନକଲେ । ସେ କହିଲେ, ''ଡେଭିଡ୍, ମୁଁ ନିଜ ଭାଇପରି ତୁମକୁ ଭଲପାଏ । କହ ତ, ମୁଁ କ'ଣ ଜଣେ ଭଲ ଯୋଦ୍ଧା ନୁହେଁ ?''

ତା'ପରେ ଶବ ଚାରୋଟିକୁ କୋଠରି ବାହାରକୁ ଫିଙ୍ଗିଦେଇ ଟେବୁଲ ଉପରେ ବସିଲେ ଓ ଏକ ସମର ସଙ୍ଗୀତ ଗାଇ ଗାଇ ନିଜର ତରବାରିଟି ପରିଷ୍କାରକଲେ ।

ଆଲାନ୍ ମୋର କାନ୍ଧରେ ହାତ ରଖି କହିଲେ, ''ତୁମେ ଟିକିଏ ଶୋଇଯାଅ, ମୁଁ ଜଗିରହୁଛି ।'' ସେ ଜଗିବସିଲେ ଏବଂ ମୁଁ ଶୋଇପଡ଼ିଲି । କିଛି ସମୟ ପରେ ସେ ମୋତେ ଉଠାଇଦେଲେ ଏବଂ ନିଜେ ଟିକିଏ ଶୋଇପଡ଼ିଲେ । ସେତେବେଳକୁ ଦିନ ହେଲାଣି । ବାହାରେ ସାମୁଦ୍ରିକ ପକ୍ଷୀଙ୍କର କାକଳି ଶୁଣି ଅନୁମାନ କଲି ଯେ ଜାହାଜ କୂଳର ସମୀପବର୍ତ୍ତୀ ହୋଇଛି । ଝରକା ଦେଇ ଚାହିଁଲି– ଅତି ନିକଟରେ ଥିବା ସ୍ଥଳଭାଗ ମୋର ଦୃଷ୍ଟିପଥାରୂଢ଼ ହେଲା ।

ଆଲାନ୍ ଉଠିବା ପରେ ଆମେ କିଛି ଜଳଖିଆକରିନେଲୁ । ଆମେ ଯେଉଁ କୋଠରିରେ ରହିଲୁ ତା'ଠାରୁ ଭଲ ରହିବା ସ୍ଥାନ ଆମେ କେବେହେଲେ ପାଇ ନଥିଲୁ । ଜାହାଜର ଯାତ୍ରୀଙ୍କ ପାଇଁ ଥିବା ସବୁଠାରୁ ଭଲ ଖାଦ୍ୟ ଓ ମଦ ସେହିଠାରେ ରଖାଯାଇଥିଲା ଏବଂ ଆମେ ସେସବୁ ବ୍ୟବହାର କରିଥିଲୁ । ମୋର ସାହସର ପ୍ରଶଂସା କରି ଆଲାନ୍ ତାଙ୍କ ବାପା ଦେଇଥିବା ରୁପା ବୋତାମଟିଏ ତାଙ୍କ କୋଟରୁ କାଟି ମୋତେ ଦେଲେ ଓ କହିଲେ, ''ଗତ ରାତିରେ ହୋଇଥିବା ଯୁଦ୍ଧର ସ୍ମାରକୀ ରୂପେ ଏଇ ଜିନିଷଟି ରଖ । ତୁମେ ମୋର ଯେଉଁ ବନ୍ଧୁଙ୍କୁ ଏହି ବୋତାମଟି ଦେଖାଇବ, ସେ ନିଶ୍ଚୟ ତୁମକୁ ସାହାଯ୍ୟ କରିବେ ।''

ଏହି ସମୟରେ ରିୟାର୍ଚ୍ଚ ଆସି ଆମ ଦୁହିଁଙ୍କୁ ଡାକିଲେ । ଛାତରେ ଆଲୋକ ମାର୍ଗ ଭାଙ୍ଗି ଯେଉଁ ରାସ୍ତା ଫିଟିଥିଲା ମୁଁ ସେହିବାଟେ ଉପରକୁ ଉଠିଲି । ହାତରେ ପିସ୍ତଲଟିଏ ଧରି ସେ କହିଲେ, ''କପ୍ତାନ ତୁମ ବନ୍ଧୁଙ୍କ ସହିତ କଥାବାର୍ତ୍ତା ହେବାକୁ ଚାହୁଁଛନ୍ତି, ସେ ଝରକା ପାଖକୁ ଆସିପାରିବେ କି ?''

ମୁଁ ପଚାରିଲି, ''କପ୍ତାନ ଯେ ପୁଣି କି କୌଶଳ ରଚନା କରୁଛନ୍ତି ସେକଥା ଆମେ କିପରି ଜାଣିବୁ ?''

ରିୟାର୍ଚ୍ଚ କହିଲେ, ''ନା ଡେଭିଡ୍, ମୁଁ ସତକଥା କହୁଛି, ଆଉ କିଛି ଗୋଳମାଳ ହେବନାହିଁ । ମୁଁ ତୁମର ବନ୍ଧୁଙ୍କୁ ଖୁବ୍ ଭୟକରୁଛି ।''

କପ୍ତାନଙ୍କ ସହିତ କଥାବାର୍ତ୍ତା ହେବାକୁ ଆମେ ସମ୍ମତ ହେଲୁ । ସେ ଆସି ଝରକା ବାହାରେ ଛିଡ଼ାହେଲେ । କପ୍ତାନ କହିଲେ– ଆଲାନ୍‌ଙ୍କୁ ନିକଟସ୍ଥ ଉପକୂଳରେ ଛାଡ଼ି ସେ ଗ୍ଲାସଗୋ ଯିବେ । କିନ୍ତୁ ଆଲାନ କହିଲେ– ତାଙ୍କୁ ଯେପରି ହେଉ ନେଇ ଲିନେଲଚ୍‌ଠାରେ ଛାଡ଼ିବାକୁ ହେବ । କପ୍ତାନ ଶେଷରେ ସ୍ୱୀକୃତହେଲେ ।

ଖୁବ୍ ଶୀଘ୍ର କୋଭେନେଣ୍ଟ ଜାହାଜ ଲିନେଲଚ୍ ଅଭିମୁଖେ ଚାଲିଲା । ଆଲାନ୍ ଏବଂ ମୁଁ କୋଠରିର ଦରଜା ପାଖରେ ବସି କପ୍ତାନଙ୍କର ତମାଖୁ ସେବନ କରିବାରେ ଲାଗିଲୁ । ସେହି ସମୟ ଭିତରେ ପରସ୍ପର ପରସ୍ପରକୁ ନିଜନିଜର କଥା କହି ଶୁଣାଉଥାଉ । ମୋ ନିଜ ଗପ ତ ଜଣା । ଆଲାନ୍‌ଙ୍କର ଗଳ୍ପ ତତ୍‌କାଳୀନ ପାର୍ବତ୍ୟ ଅଞ୍ଚଳରେ ବାସକରୁଥିବା ଲୋକର ଗଳ୍ପ ପରି ଅତି ସାଧାରଣ । ତାଙ୍କର ପରିବାର ଥିଲା ଖୁବ୍ ଅଭିମାନୀ; କିନ୍ତୁ ଦରିଦ୍ର । ୧୭୪୫ ମସିହାରେ ସେ ଥିଲେ ଜଣେ ବିଦ୍ରୋହୀ । ସେତେବେଳେ ସେ ଥିଲେ ଫରାସୀ ରାଜାଙ୍କର ସୈନ୍ୟବିଭାଗର ଜନୈକ କର୍ମଚାରୀ । ଯଦି ସେ ଲାଲକୋଟଧାରୀଙ୍କ ହାତରେ ଧରାପଡ଼ନ୍ତି ଏବଂ ସେମାନେ ଉପରୋକ୍ତ ଦୁଇଟି କଥା ଭିତରୁ କୌଣସି ଗୋଟିଏ କଥା ଜାଣିପାରନ୍ତି ତାହେଲେ ତାଙ୍କୁ ନିଶ୍ଚୟ ପ୍ରାଣଦଣ୍ଡ ଭୋଗ କରିବାକୁ ପଡ଼ିବ । ତଥାପି ୧୭୪୬ ଖ୍ରୀଷ୍ଟାବ୍ଦଠାରୁ ସେ ସ୍କଟ୍‌ଲାଣ୍ଡକୁ ଯାତାୟାତ କରିଆସୁଛନ୍ତି ।

ମୁଁ ପଚାରିଲି, ''ତା'ହେଲେ ଆପଣ କାହିଁକି ଯାତାୟାତ କରୁଛନ୍ତି ?'' ଆଲାନ୍ କହିଲେ, ''ମୋର ଦେଶ ଏବଂ ମୋର ବନ୍ଧୁବାନ୍ଧବଙ୍କୁ ଦେଖିବା ପାଇଁ ମୋର ଖୁବ୍ ଇଚ୍ଛାହୁଏ । ତା'ଛଡ଼ା ମୋର ମଧ ସ୍କଟ୍‌ଲାଣ୍ଡରେ ଅଳ୍ପ କିଛି କାମ ଥାଏ; କିନ୍ତୁ ମୋର ସବୁଠାରୁ ବଡ଼ କାମ ହେଲା ମୋର ମାଲିକ ଆର୍ଡ୍ ଡିସିଏଲ୍‌ଙ୍କ ପାଇଁ କିଛି କାର୍ଯ୍ୟ କରିବା । ସେ ସ୍କଟ୍‌ଲାଣ୍ଡର ଜଣେ ଖୁବ୍ ବଡ଼ଲୋକ । ତାଙ୍କ ଅଧୀନରେ ଚାରିଶହ ଲୋକ କାର୍ଯ୍ୟ କରନ୍ତି; କିନ୍ତୁ ଫ୍ରାନ୍‌ସରେ ସେ ବଡ଼ ଦରିଦ୍ର ଲୋକପରି ବାସକରନ୍ତି । ବର୍ତ୍ତମାନ ଆପେନ୍‌ରେ ଥିବା ତାଙ୍କର ରୟତମାନେ ରାଜା ଜର୍ଜଙ୍କୁ କର ଦେବା ପାଇଁ ବାଧହେଉଛନ୍ତି; କିନ୍ତୁ ସେହି ରୟତମାନେ ସେମାନଙ୍କର ମାଲିକଙ୍କୁ ଅତ୍ୟନ୍ତ ଭଲପାଆନ୍ତି । ତେଣୁ ନିଜଠାରୁ ଅର୍ଥ ସଂଗ୍ରହକରି ସେମାନେ ତାଙ୍କ ପାଖକୁ ମଧ ଗୋପନରେ ପଠାଇଥାଆନ୍ତି । ଆର୍ଡ୍ ଡିସିଏଲ୍‌ଙ୍କ ପାଇଁ ମୋତେ ଏ ଅର୍ଥ ଫ୍ରାନ୍‌ସକୁ ନେବାକୁ ପଡ଼େ ।'' ଏହା କହି ସେ ତାଙ୍କ କମରରେ ବାନ୍ଧିଥିବା ପଟି ଉପରେ ଆଘାତକଲେ । ପଟି ଭିତରେ ଥିବା ଗିନିର ଝଣଝାଣ ଶବ୍ଦ ମୁଁ ଶୁଣିବାକୁ ପାଇଲି । କହିଲି, ''ମୁଁ ଭାବୁଛି ଏହା ଏକ ଉତ୍ତମ କାର୍ଯ୍ୟ । ମୁଁ ଜଣେ ହୁଇଗ୍ ହେଲେ ମଧ ଏହାକୁ ଏକ ମହତ୍ କାର୍ଯ୍ୟ ବୋଲି ନିଶ୍ଚୟ ସ୍ୱୀକାରକରିବି ।''

''ହଁ ତୁମେ ଜଣେ ହୁଇଗ୍; କିନ୍ତୁ ତୁମେ ଖୁବ୍ ଭଦ୍ର । ତୁମେ ଯଦି ଅଭିଶପ୍ତ କେମ୍ପବେଲବଂଶୀୟ ହୋଇଥାଅ, ତାହାହେଲେ ତୁମେ ନିଶ୍ଚୟ ଏହା ଶୁଣିବାକୁ ଘୃଣା କରିବ । ଆଉ ତୁମେ ଯଦି 'ଲାଲବିଲୁଆ' ଦଳର ହୋଇଥାଅ.....'' ସେହି ନାମ

ଉଚ୍ଚାରଣ କରି ସେ ଏତେ ବେଶି ଭୟାନକ ଦେଖାଗଲେ ଯେ ମୁଁ ଭୟଭୀତ ହୋଇପଡ଼ିଲି ।

ମୁଁ ପଚାରିଲି, ''ସେ 'ଲାଲବିଲୁଆ' ପୁଣି କିଏ ?''

ଆଲାନ୍ କହିଲେ, ''ସେ କିଏ ମୁଁ ତେବେ କହୁଛି ଶୁଣ । ୧୭୪୬ ଖ୍ରୀ:ଅର କୁଲେଡ଼େନ ଯୁଦ୍ଧରେ ଯେତେବେଳେ ଜେକୋବାଇଟମାନେ ଇଂରେଜ ସୈନ୍ୟଙ୍କଦ୍ୱାରା ପରାଜିତହେଲେ, ଆପ୍ପିସିଏଲ ଫ୍ରାନ୍ସକୁ ପଳାୟନକଲେ । ଅତ୍ୟାଚାରୀ ଇଂରେଜମାନେ ତାଙ୍କର ଭୂ-ସମ୍ପତ୍ତି ଏବଂ ଆଉ ଯାହା କିଛି ଥିଲା ସବୁ ଅପହରଣ କଲେ । ଜେକୋବାଇଟ୍‌ମାନଙ୍କ ହାତରୁ ତରବାରି ଛଡ଼ାଇନେଲେ ଓ ପୋଷାକ କାଢ଼ିନେଇ ସେମାନଙ୍କୁ ଉଲଗ୍ନ କରି ଛାଡ଼ିଲେ । ଏହାପରେ ଅଧିକୃତ ଦେଶର ଦାୟିତ୍ୱ ବହନ କରିବା ପାଇଁ ଇଂରେଜ ରାଜା ଜର୍ଜ ଯାହାକୁ ନିଯୁକ୍ତି ଦେଲେ ସେ ଥିଲେ ଜଣେ କେମ୍ପବେଲ୍ । ତାଙ୍କର ନାମ କଲିନ୍ କେମ୍ପବେଲ୍ । ଲୋକମାନେ ତାଙ୍କୁ 'ଲାଲବିଲୁଆ' ବୋଲି କହୁଥିଲେ । ପ୍ରଥମେ ପ୍ରଥମେ ସେ ଅତ୍ୟନ୍ତ କୋମଳ ପ୍ରକୃତିର ଥିଲେ; କିନ୍ତୁ ଆପ୍ପିସିଏଲଙ୍କୁ କିପରି ଗୋପନରେ ଅର୍ଥ ଯୋଗାଣହେଉଛି ଏ କଥା ଜାଣିବା ପରେ କଲିନ କେମ୍ପବେଲ୍ କ୍ରୋଧଜର୍ଜରିତ ହୋଇଉଠିଲେ । ତତ୍‌ପରେ ସେ ଜମିଗୁଡ଼ିକ ବିକ୍ରିକରିଦେବାପାଇଁ ଚେଷ୍ଟାକଲେ; କିନ୍ତୁ ଜମି କିଣିବା ପାଇଁ ଜେକୋବାଇଟ୍‌ମାନେ ଯେ କୌଣସି କେମ୍ପବେଲଠାରୁ ଅଧିକ ଅର୍ଥ ଦେବାକୁ ପ୍ରସ୍ତୁତ ହେଲେ ।''

କହିଲି, ''ଯା'ହେଉ ଆଲାନ, ମୁଁ ହୁଇଗ୍ ହେଲେହେଁ ସେ ଲୋକଙ୍କର ପରାଜୟରେ ଖୁବ୍ ଆନନ୍ଦିତ ।''

ସେ କହିଲେ, ''ତୁମେ କାହାର ପରାଜୟ କଥା କହୁଛ ଡେଭିଡ୍ ? ସେ ପରାସ୍ତ ହୋଇନାହିଁ । କାରଣ ସେ ବର୍ତ୍ତମାନ କ'ଣ କରିବାକୁ ଯାଉଛି ଜାଣ ? ଆପ୍ପିସିଏଲ୍‌ଙ୍କର ଲୋକମାନଙ୍କୁ ନିଜ ଘରୁ, ନିଜର ବାପାମାଆଙ୍କଠାରୁ ତଡ଼ିଦେବାକୁ ଚେଷ୍ଟା କରୁଛି । ସେମାନଙ୍କୁ ଏ ଦେଶରୁ ତଡ଼ି ଜଣେ ଜଣେ ଭିକାରି ସଜାଇବାର ବନ୍ଦୋବସ୍ତ କରୁଛି । ଆପ୍ପିସିଏଙ୍କଠାକୁ ଗୋପନରେ ଏକ ପେନି ପଠାଯିବାଠାରୁ କୃଷିକ୍ଷେତ୍ରଗୁଡ଼ିକୁ ପୂରାପୂରି ଜନଶୂନ୍ୟ କରିଦେବାକୁ ଏହି 'ଲାଲ ବିଲୁଆ' ଅଧିକ ଶ୍ରେୟସ୍କର ମନେକରନ୍ତି ।''

କହିଲି, ''ସରକାର ତାଙ୍କୁ ଏ କାମ କରିବାକୁ ନିଶ୍ଚୟ ନିର୍ଦ୍ଦେଶ ଦେଇଥିବେ । ତେଣୁ ଆପଣ ଆଜି କଲିନ କେମ୍ପବେଲ୍‌କୁ ହତ୍ୟାକଲେ କାଲି ତାଙ୍କ ସ୍ଥାନରେ ଆଉଜଣେ କେହି ନିଯୁକ୍ତି ପାଇ ସେହି ସରକାରୀ ନିର୍ଦ୍ଦେଶାନୁଯାୟୀ କାମ କରିବେ ।''

ଆଲାନ୍ କହିଲେ, ''ଯୁଦ୍ଧ କରିବାରେ ତୁମେ ବେଶ୍ ପାରଦର୍ଶୀ, କିନ୍ତୁ ତୁମକୁ ଦେଖି ଜଣେ ବେଶ୍ ଜାଣିପାରିବ ଯେ ତୁମେ 'ହୁଇଗ୍' ହିସାବରେ ଗଢ଼ା ହୋଇଛ ।'' ସେ ଏତେ ରାଗିଯାଇଥିଲେ ଯେ ମୁଁ ତାଙ୍କ ସହିତ ଆଉ ଅଧିକ ଯୁକ୍ତି କଲିନାହିଁ; କାରଣ ଗୁଣ ସାଙ୍ଗକୁ ତାଙ୍କର କ'ଣ ଦୋଷ ଥିଲା ତାହା ମୋତେ ଜଣାଥିଲା ।

# କୋଭେନେଣ୍ଟ ଜାହାଜର ପରିଣତି

ସେଦିନ ରାତି ଅଧିକ ହୋଇଯାଇଥାଏ । ହୋସିଜିନ୍ ଆମକୁ ଆସି କହିଲେ, ''ଆପଣ ବାହାରକୁ ଆସି ନିଜେ ଜାହାଜ ଚଳାଇ ପାରିବେ କି ନାହିଁ ଦେଖନ୍ତୁ ।''

ଆଲାନ୍ କହିଲେ, ''ଏହା କ'ଣ ଆପଣଙ୍କର ଅନ୍ୟ ଏକ କୌଶଳ ?''

ହୋସିଜିନ୍ କହିଲେ, ''ମୁଁ କ'ଣ କୌଶଳ କଲାପରି ଦେଖାଯାଉଛି ? ମୋର ଜାହାଜ ବର୍ତ୍ତମାନ ବିପଦାପନ୍ନ ।''

ତାଙ୍କ କଥା ସତ୍ୟ ବୋଲି ଜଣାଯିବାରୁ ଆଲାନ୍ ଓ ମୁଁ ଡେକ୍ ଉପରେ ତାଙ୍କୁ ଅନୁସରଣ କଲୁ । ସମୁଦ୍ର ଶାନ୍ତ ଥାଏ ଓ ନୀଳ ଆକାଶରେ ଚନ୍ଦ୍ର ଉଜ୍ଜ୍ୱଳ କିରଣ ଦେଉଥାଏ । ସେ ଦୂରକୁ ଆଙ୍ଗୁଳି ନିର୍ଦ୍ଦେଶ କରି ଆମ୍ଭମାନଙ୍କୁ ଝରଣା ପରି ଏକ ଜଳସ୍ରୋତ ଦେଖାଇଲେ । ଅନୁଚ୍ଚଜଳ-ଗର୍ଜନ ମଧ୍ୟ ଆମ୍ଭମାନଙ୍କର ଶ୍ରୁତିଗୋଚର ହେଲା ।

ଆଲାନ୍ କହିଲେ, ''ଏହା ସମୁଦ୍ର ଜଳର ପାହାଡ଼ ଦେହରେ ଆଘାତ ଶବ୍ଦ ହେବ ବୋଧହୁଏ । ଏଥିରୁ ପାହାଡ଼ର ଅବସ୍ଥିତି ଜଣାପଡୁଛି ।''

ହୋସିଜିନ୍ କହିଲେ, ''କେବଳ ସେଇ ଗୋଟିକ ପାହାଡ଼ ସେଠାରେ ଅଛି ବୋଲି ସ୍ଥିର ଭାବରେ ଜାଣିଥିଲେ କୌଣସି ଅଡୁଆ ନଥିଲା ।'' ସେ ଏହା କହିବା ପରେ ପରେ ଆମ୍ଭେମାନେ ଆଗରେ ସେହିଭଳି ଅନେକ ଝରଣା ପରି ଜଳସ୍ରୋତ ଦେଖିଲୁ । ହୋସିଜିନ୍ କହିଲେ, ''ମୁଁ ଆଗରୁ ଏହି ପାହାଡ଼ଗୁଡ଼ିକ କଥା ଜାଣିଥିଲେ ଛଅଶହ ଗିନିର ବିନିମୟରେ ବି ଏ ସ୍ଥାନକୁ ମୋର ଜାହାଜ ଆଣି ନଥାନ୍ତି । ଯା'ହେଉ ଆପଣ ଆମ୍ଭମାନଙ୍କୁ ଏଠାକୁ ଆଣିଛନ୍ତି । ଆପଣଙ୍କର କିଛି କହିବାର ଅଛି ତ କହନ୍ତୁ ।'' ଆଲାନ୍ କହିଲେ, ''ମୋର ମନେହୁଏ, ଏହି ପାହାଡ଼ଗୁଡ଼ିକ ଟୋରାନ୍ ପାହାଡ଼ । ଦଶମାଇଲ ପର୍ଯ୍ୟନ୍ତ ସେଗୁଡ଼ିକର ବିସ୍ତୃତି ।''

ମି: ରିୟାର୍ଚ ଏବଂ କପ୍ତାନ ପରସ୍ପରଆଡ଼କୁ ଚାହିଁଲେ । କପ୍ତାନ କହିଲେ, ''ସେହି ପାହାଡ଼ଗୁଡ଼ିକ ମଧ୍ୟ ଦେଇ ରାସ୍ତା ଅଛି ବୋଲି ମୁଁ ଭାବୁଛି ।''

ଆଲାନ୍ କହିଲେ, '' ମୁଁ ମଧ୍ୟ ତାହା ଭାବୁଛି ।''

ଜାହାଜ ସେହି ରାସ୍ତାର ସନ୍ଧାନରେ ଚାଲିଲା । ସେହି ରାସ୍ତା ଖୁବ୍ ପ୍ରଶସ୍ତ ଭାବରେ ଆମ୍ଭମାନଙ୍କ ଆଗରେ ଲମ୍ୱିଯାଇଥିବାପରି ବୋଧହେଲା । ଆମ୍ଭେମାନେ ଗୋଟିଏ ପାହାଡ଼ ଅତିକ୍ରମ କରୁଛୁ, ଠିକ୍ ସେହି ସମୟରେ ଏକ ପ୍ରଚଣ୍ଡ ତରଙ୍ଗର ଆଘାତ

ଜାହାଜଟିକୁ ଦୋହଲାଇଦେଲା । ଜାହାଜଟି ବୁଲିଯାଇ ପାହାଡ଼ ଦେହରେ ଏତେ ଜୋର୍‌ରେ ବାଜିଲା ଯେ ଆମ୍ଭେମାନେ ସମସ୍ତେ ଡେକ୍ ଉପରେ କଚାଡ଼ି ପଡ଼ିଲୁ ।

କପ୍ତାନଙ୍କୁ ଛାଡ଼ି ଜାହାଜର ଅନ୍ୟ ଯାତ୍ରୀମାନେ କୋଭେନେଣ୍ଟ ଜାହାଜରୁ ନିଜନିଜକୁ ରକ୍ଷା କରିବା ପାଇଁ ଜାହାଜରୁ ଡଙ୍ଗାଟିଏ ଫିଟାଇବାରେ ଲାଗିଗଲେ । ଜାହାଜର ଗୋଟିଏ କଡ଼କୁ ଧରି କପ୍ତାନ ଛିଡ଼ାହୋଇଥାନ୍ତି ଏବଂ ପ୍ରତ୍ୟେକ ଥର ଜାହାଜ ପାହାଡ଼ ଦେହରେ ପିଟିହେବା ବେଳକୁ ଆର୍ତ୍ତନାଦ କରୁଥାନ୍ତି । ଆଲାନ୍ ଜାହାଜ ଭିତରୁ ଡଙ୍ଗାଟିକୁ ବାହାର କରୁଥାନ୍ତି । ଆମେ ସେତେବେଳେ ଦେଶର କେଉଁ ଅଂଶର ନିକଟବର୍ତ୍ତୀ ହୋଇଅଛୁ ବୋଲି ତାଙ୍କୁ ପଚାରିଲି । ଉତ୍ତରରେ ସେ କହିଲେ, ''ଏହା ଏକ ବଡ଼ ବିପଜ୍ଜନକ ସ୍ଥାନ– 'ମୁଲ' ଦ୍ୱୀପ ନାମରେ ପରିଚିତ । ସେଠାରେ କେମ୍ପବେଲ୍‌ମାନେ ବାସ କରନ୍ତି ।'' ତାଙ୍କ ମୁହଁରୁ କଥା ସରି ନଥାଏ, ଏପରି ସମୟରେ ଆଉ ଏକ ବିରାଟ ତରଙ୍ଗ ଗୋଟିଏ କଡ଼ରୁ ଜାହାଜକୁ ଏପରି ଜୋର୍‌ରେ ଟେକିଦେଲା ଯେ ମୁଁ ସମୁଦ୍ର ଭିତରକୁ ଛାଟିକି ପଡ଼ିଲି ।

ମୁଁ ଭାସି ଭାସି ଯାଉଥାଏ । ସମୁଦ୍ରର କିଛି ଲୁଣି ପାଣି ପିଇଗଲି । ତରଙ୍ଗରେ କିଛି ସମୟ ତଳ ଉପର ହେବାପରେ ମୁଁ ଖଣ୍ଡିଏ କାଠ ପାଇ ତାକୁ ଜାବୁଡ଼ି ଧରିଲି । କାଠଖଣ୍ଡିକୁ ଧରି ମୁଁ ଭାସି ଭାସି ଏପରି ଏକ ସ୍ଥାନରେ ପହଞ୍ଚିଲି ଯେଉଁଠାରେ କି ସମୁଦ୍ରର ଜଳ ଅପେକ୍ଷାକୃତ ସ୍ଥିର । ପଛକୁ ଫେରି ଦେଖିଲି କୋଭେନେଣ୍ଟ ଜାହାଜ ପାହାଡ଼ ଦେହରେ ପିଟି ହେବାରେ ଲାଗିଛି । ଅନ୍ୟ ଯାତ୍ରୀମାନଙ୍କର କୌଣସି ଚିହ୍ନ ନାହିଁ । ନିକଟରେ ଉପକୂଳ । ଚନ୍ଦ୍ରକିରଣରେ ମୁଁ ବନ୍ୟଗୁଳ୍ମ ସମାଚ୍ଛନ୍ନ ଭୂମି ମଧ ଦେଖିପାରୁଥାଏ । ପାଣି ଉପରେ ଦୁଇଗୋଡ଼ ପିଟି ଏବଂ କାଠଖଣ୍ଡିକୁ ଖୁବ୍ ଶକ୍ତ ଭାବରେ ଜାବୁଡ଼ି ଧରି ଧୀରେ ଧୀରେ ମୁଁ କୂଳଆଡ଼କୁ ଅଗ୍ରସର ହେଲି ଓ ଘଣ୍ଟାକ ପରେ ବାଲି ଉପରେ ଯାଇ ପଡ଼ିଲି । ଜୀବନରେ ମୁଁ କେବେ ଏତେ ବେଶି କ୍ଳାନ୍ତ ହୋଇ ନଥିଲି । ନିଷ୍କରୁଣ ସମୁଦ୍ର କବଳରୁ ମୋ ଜୀବନ ରକ୍ଷାକରିଥିବାରୁ ମୁଁ ଈଶ୍ୱରଙ୍କଠାରେ କୃତଜ୍ଞତା ଜଣାଇଲି ।

ସମୁଦ୍ର ଆଡ଼କୁ ଆଖି ଫେରାଇଲି । କୋଭେନେଣ୍ଟ ଜାହାଜ କିମ୍ବା ନୌକାର କୌଣସି ଚିହ୍ନ ଦେଖିଲି ନାହିଁ । ଭାବିଲି ତାହାର ନିଶ୍ଚୟ ସଲିଳ ସମାଧି ହୋଇଥିବ ।

କ୍ଳାନ୍ତ, ସିକ୍ତ ଏବଂ କ୍ଷୁଧାର୍ତ୍ତ ହୋଇ ସାହାଯ୍ୟ ଅନ୍ୱେଷଣରେ ବାହାରିଲି । ମୋତେ ଦୀର୍ଘ ପଥଚାଲିବାକୁ ପଡ଼ିଲା । 'ମୁଲ୍' ଦ୍ୱୀପର ଏହି ଅଞ୍ଚଳରେ ପ୍ରାୟ ଜନବସତି ନଥାଏ । ଶେଷରେ ମୃତବତ୍ ଟଳ ଟଳ ହୋଇ ଏକ ଘର ନିକଟରେ ପହଞ୍ଚିଲି । ତାହାର କାନ୍ଥଗୁଡ଼ିକ ପଥରରେ ତିଆରି । ମାଟି ଓ ଘାସରେ ତାହାର ଛାତ ନିର୍ମିତ । ଜଣେ କେହି ବୃଦ୍ଧ ଭଦ୍ରଲୋକ ଖରାରେ ବସି ଧୂମପାନ କରୁଥାନ୍ତି । ସେ ମୋ ହାତ ଧରି ତାଙ୍କ ସ୍ତ୍ରୀଙ୍କ ନିକଟକୁ ଘର ଭିତରକୁ ନେଇଗଲେ । ସେ ମୋତେ ଖାଇବା ପାଇଁ ରୋଟି ଓ ମାଂସ ଦେଲେ ଏବଂ ପିଇବା ପାଇଁ ମଦ୍ୟ ଆଣିଦେଲେ । ବହୁତ

ବିପଦସଙ୍କୁଳ ସ୍ଥାନ ଅତିକ୍ରମ କଲାପରେ ମୋତେ ସେ ସ୍ଥାନ ଠିକ୍ ରାଜପ୍ରାସାଦ ତୁଲ୍ୟ ବୋଧହେଉଥାଏ । ମୁଁ ଏଠାରେ ଅନେକ ଦିନ ରହିଗଲି ।

ଦିନେ ଆମେମାନେ କଥାବାର୍ତ୍ତା ହେଉଥାଉ । ହଠାତ୍ ପାଟିକରି କହିଲେ, ''ତୁମେ ତ ସେହି ରୁପାବୋତାମଧାରୀ ବାଳକ !'' ପକେଟରେ ଯତ୍ନର ସହିତ ଲୁଚାଇ ରଖିଥିବା ଆଲାନ୍‌ଙ୍କର ବୋତାମଟି ମୁଁ ତାଙ୍କୁ ଦେଖାଇଥିଲି । ବୃଦ୍ଧ କହିଲେ, ''ତୁମ ପାଇଁ ଗୋଟିଏ ଖବର ଅଛି । ଟରୋସେଠାରେ ଥିବା ଏକ ନୌକାରେ ବସି ତୁମେ ତୁମ ବନ୍ଧୁଙ୍କ ଦେଶକୁ ଯିବାକୁ ହେବ । ମୁଁ ଆସନ୍ତାକାଲି ତୁମକୁ ରାସ୍ତା ଦେଖାଇ ଦେବି ।''

ତହିଁ ପରଦିନ ସକାଳେ ବୃଦ୍ଧ ମୋତେ ଟରୋସେକୁ ସବୁଠାରୁ ଭଲ ରାସ୍ତାଟି ଦେଖାଇଦେଲେ । ସେଠାରୁ ଟରୋସେ ପ୍ରାୟ ପଚାଶ ମାଇଲ ଦୂର । ଟରୋସେଠାରୁ ଜାହାଜ ଧରି ସ୍କଟ୍‌ଲାଣ୍ଡ ଯାଇ ମୋର ବନ୍ଧୁ ଆଲେନ୍‌ବ୍ରେକ୍‌କୁ ପୁଣି ଥରେ ଦେଖିବି ବୋଲି ମୋର ମନରେ ଆନନ୍ଦ ଜାତ ହେଲା । ନୂତନ ଆଶା ଏବଂ ମନୋବଳ ଧରି ମୁଁ ମୋର ଯାତ୍ରାପଥରେ ଅଗ୍ରସର ହେଲି ।

# ରୁପାବୋତାମଧାରୀ ବାଳକ

ସିଧା ରାସ୍ତାରେ ଗଲେ ମୁଲ୍‌ଦ୍ୱୀପରୁ ଟରୋସେ ପଚାଶ ମାଇଲ । ତଥାପି ବୃଦ୍ଧ ବତାଇଥିବା ରାସ୍ତାରେ ଯାଇ ମଧ୍ୟ ସେଠାରେ ପହଞ୍ଚିବା ପାଇଁ ମୋତେ ଶତାଧିକ ମାଇଲ ରାସ୍ତା ଅତିକ୍ରମ କରିବାକୁ ପଡ଼ିଲା । ଯାଉଁ ଯାଉଁ ବହୁବାର ମୁଁ ରାସ୍ତା ଭୁଲିଯାଉଥାଏ । ଯାହାହେଉ, ବହୁ କଷ୍ଟ ସହି ଟରୋସେରେ ଚାରିଦିନ ଆଗରୁ ଯାଇ ପହଞ୍ଚିଲି । ସ୍କଟ୍‌ଲାଣ୍ଡର ଉଦ୍ଦିଷ୍ଟ ସ୍ଥାନକୁ ମୋତେ ଯେଉଁ ଡଙ୍ଗାରେ ଯିବାକୁ ହେବ ସେହି ଡଙ୍ଗାଟି ମୋର ଦୃଷ୍ଟିପଥାରୂଢ଼ ହେବାମାତ୍ରେ ମୋର ହୃଦୟ ଉଲ୍ଲସିତ ହୋଇଉଠିଲା ।

ମୁଲ୍ ଦ୍ୱୀପ ଅତିକ୍ରମ କରି ଡଙ୍ଗା ଆଗେଇ ଚାଲିଲା । ଅବଶେଷରେ କିନ୍ ଲୋଚେଲାଇନ୍‌ଠାରେ ସ୍ଥଳଭାଗରେ ଅବତରଣ କଲି । ଆଲାନ୍ ବ୍ରେକ୍ କେଉଁ ରାସ୍ତାରେ ଯାଇଛନ୍ତି ତାହା ମୋତେ କିଏ କହିପାରିବ ବୋଲି ଜିଜ୍ଞାସୁ ଦୃଷ୍ଟିରେ ଏଣେତେଣେ ଚାହୁଁଥାଏ । ମୁଁ ଆସିଥିବା ଡଙ୍ଗାର ନାବିକ ଥିଲେ ନେଲ୍‌ରୟ ମେକ୍‌ରବ୍ । ସେ ଆଲାନ୍‌ଙ୍କ ଦଳର ଲୋକ ହୋଇଥିବାରୁ ତାଙ୍କଠାରୁ ମୋ ବନ୍ଧୁଙ୍କ ଖବର ପାଇବାର ଆଶା କଲି । ତାଙ୍କୁ ଗୋଟିଏ ପାଖକୁ ଡାକି ସେ ଆପିନ୍‌ରେ ଥିବା ଦଳର ଲୋକ କି ନୁହେଁ ବୋଲି ପଚାରିଲି ।

''କାହିଁକି ନୁହେଁ ?''— ସେ ସନ୍ଦେହୀ ଭାବରେ ମୋତେ ପଚାରିଲେ । ଉତ୍ତରରେ ମୁଁ କହିଲି, ''ମୁଁ କୌଣସି ଜଣେ ବ୍ୟକ୍ତିଙ୍କୁ ଖୋଜୁଛି । ଭାବୁଥିଲି, ସେ କେଉଁଆଡ଼େ

ଯାଇଛନ୍ତି ଆପଣ ହୁଏତ ଜାଣିଥିବେ । ତାଙ୍କ ନାମ ଆଲାନ୍ ବ୍ରେକ୍ ।'' ତାଙ୍କୁ ଆଲାନ୍ ଦେଇଥିବା ବୋତାମଟି ଦେଖାଇବା ପରିବର୍ତ୍ତେ ଅତି ନିର୍ବୋଧ ଭାବରେ ଏକ ଶିଲିଂ ଅର୍ଥର ଲୋଭ ଦେଖାଇଲି ।

ଏହାଦ୍ୱାରା ସେ ଅତ୍ୟନ୍ତ ରାଗାନ୍ୱିତ ହେଲେ । କହିଲେ, ''ଏହାଦ୍ୱାରା ମୁଁ ଅପମାନିତ ହେଲି । ଜଣେ ଅନ୍ୟଜଣକ ସହିତ ଏ ପ୍ରକାର କଥାବାର୍ତ୍ତା କରିବା ଭଦ୍ରୋଚିତ ନୁହେଁ । ତୁମେ ଯାହାକୁ ଚାହୁଁଛ ସେ ବର୍ତ୍ତମାନ ଫ୍ରାନସ୍‌ରେ ଅଛନ୍ତି ।''

କ୍ଷମାପ୍ରାର୍ଥନା କରିବାରେ ସମୟ ନଷ୍ଟ ନକରି ମୁଁ ତାଙ୍କୁ ଆଲାନ୍ ଦେଇଥିବା ବୋତାମଟି ଦେଖାଇଲି । ନାବିକ କହିଲା, ''ପ୍ରଥମରୁ ତୁମେ ତାହା ମୋତେ ଦେଖାଇଥିଲେ ଭଲ ହୋଇଥାନ୍ତା । ତୁମେ ରୁପାବୋତାମଧାରୀ ବାଳକ ହୋଇଥିବାରୁ ତୁମକୁ ସାହାଯ୍ୟ କରିବା ମୋର କର୍ତ୍ତବ୍ୟ ।''

ଅନତି ବିଳମ୍ବେ ନେଲ୍ ମୋତେ ଆପିନ୍‌ରେ ଥିବା ଗ୍ଲେନସ୍‌ର ଜେମ୍‌ସ ପରିବାରକୁ ରାସ୍ତା ଦେଖାଇଦେଲେ ଏବଂ ସେଠାକୁ ଯିବାକୁ ଆଦେଶ ଦେଲେ । ସେଠାରେ ପହଞ୍ଚିବା ପାଇଁ ମୋତେ ତିନିଦିନ ଲାଗିବ ବୋଲି କହିଲେ । ମୋର ଯିବା ରାସ୍ତାରେ ହୁଇଗ୍‌ସ, କେମ୍ପବେଲ୍‌ସ ଏବଂ ରେଡକୋଟ୍‌ସ୍‌ମାନଙ୍କୁ ବର୍ଜନ କରିବା ପାଇଁ ସେ ମୋତେ ସାବଧାନ କରିଦେଲେ । ଏମାନଙ୍କ ମଧ୍ୟରୁ କାହାକୁ ଯଦି କେବେ ରାସ୍ତା ଉପରେ ଦେଖେ ତେବେ ନିକଟସ୍ଥ ବୁଦା ଭିତରେ ଲୁଚିଯିବାପାଇଁ ସେ ମୋତେ କହିଲେ । ଜୀବନରେ ପ୍ରଥମଥର ପାଇଁ ଜଣେ ଦସ୍ୟୁ ବା ଜଣେ ଆଇନ୍ ଅମାନ୍ୟକାରୀ ଜେକୋବାଇଟ୍ ପରି ଆତ୍ମଗୋପନ କରିବା ଲାଗି ମୋତେ ଅଡୁଆ ଲାଗିଲା; କିନ୍ତୁ ମୁଁ ସେ ଦେଶର ସମ୍ପୂର୍ଣ୍ଣ ଅପରିଚିତ ହୋଇଥିବାରୁ କୌଣସି ପ୍ରକାର ଯୁକ୍ତିତର୍କ କରିପାରିଲି ନାହିଁ ।

ତହିଁ ପରଦିନ ଖୁବ୍ ସଅଳ ମୁଁ ଯାତ୍ରା ଆରମ୍ଭ କଲି । ଅଳ୍ପ ସମୟ ପରେ ମୁଁ ଜଣେ ସଙ୍ଗୀ ପାଇଲି । ସେ ଦିନଯାକ ମୋ ସହିତ ଚାଲିବାରେ ଲାଗିଲେ ଏବଂ ରାତିରେ ମୋ ପାଇଁ ବିଛଣାଟିଏ ବନ୍ଦୋବସ୍ତ କରିଦେଲେ । ତାଙ୍କ ନାମ ମି: ହିଣ୍ଡାର୍‌ଲାଣ୍ଡ । ତାଙ୍କ ସହିତ ମୋର ଗଢ଼ିଉଠିଥିବା ବନ୍ଧୁତ୍ୱର ଅନ୍ୟ ଏକ କାରଣ ଥିଲା । ସେ ଚାଲୁଥିବା ବେଳେ ଖଣ୍ଡିଏ ବହି ପଢ଼ିବାରେ ଲାଗିଥାନ୍ତି । ଏହି ବହିଟି ଇସେନ୍‌ଡ଼ିନ୍‌ର ଧର୍ମଯାଜକ ମୋର ପୁରାତନ ବନ୍ଧୁ ମି: କେମ୍ପବେଲଙ୍କ ଦ୍ୱାରା ଲିଖିତ । ମି: ହିଣ୍ଡାରଲାଣ୍ଡ ଥିଲେ ତାଙ୍କର ଜଣେ ବଡ଼ ପ୍ରଶଂସକ । କଥା ପ୍ରସଙ୍ଗରେ 'ଲାଲ ବିଲୁଆ' ଓ ଆପିନ୍‌ର ରୟତମାନଙ୍କ ସମ୍ବନ୍ଧରେ ମୁଁ ତାଙ୍କୁ କେତେକ କଥା ପଚାରିଲି । ଏମାନଙ୍କ ବିଷୟରେ ଆଲାନ୍‌ବ୍ରେକ୍ ମୋତେ ଆଗରୁ କହିଥିଲେ । କିନ୍ତୁ ମୁଁ ମି: ହିଣ୍ଡାର୍‌ଲାଣ୍ଡଙ୍କ ଆଗରେ ଆଲାନ୍‌ବ୍ରେକ୍‌ଙ୍କ ନାମ ଧରିଲି ନାହିଁ ।

ସେ କହିଲେ, ''ଏହା ଏକ ଭୟଙ୍କର ବ୍ୟବସ୍ଥା । ରୟତମାନଙ୍କୁ ଦୁଇଥର କର ଦେବାକୁ ହୁଏ– ଏକଥର ରାଜାଙ୍କୁ ଏବଂ ଆଉ ଥରେ ଜମିମାଲିକଙ୍କୁ । ସେମାନେ

ପ୍ରାୟ ଅନାହାର ବା ଅର୍ଦ୍ଧାହାରରେ କାଳ ଯାପନ କରନ୍ତି । ଏଥିପାଇଁ ସେମାନଙ୍କୁ କେତେକାଂଶରେ ବାଧ କରାଯାଇଥାଏ । ଗ୍ଲେନସ୍‌ର ସେମାନଙ୍କ ରାଜାଙ୍କର ଭାଇ । ଜେମସ ସେମାନଙ୍କ ପ୍ରତି କଠୋର ବ୍ୟବହାର ଦେଖାଇଥାନ୍ତି । ପୁଣି ଆଉ ଜଣେ ବ୍ୟକ୍ତି ଅଛନ୍ତି । ତାଙ୍କର ନାମ ଆଲାନ୍‌ବ୍ରେକ୍ ବୋଲି ସେମାନେ କହନ୍ତି । ଏହି ଆଲାନ୍ ଅତ୍ୟନ୍ତ ସାହସୀ ଓ ଅପରିଣାମଦର୍ଶୀ ଓ ଜେମ୍‌ସଙ୍କର ଦକ୍ଷିଣ ହସ୍ତ । ସେ ଜଣେ ଆଇନଅମାନ୍ୟକାରୀ ବ୍ୟକ୍ତି ଏବଂ କୌଣସି ପ୍ରକାର ବାଧା ମାନିବା ଲୋକ ନୁହନ୍ତି । କେବେ କୌଣସି ରୟତ ତାର ଖଜଣା ଦେବାରେ ବିଳମ୍ୱକଲେ ତା'ପଛପଟୁ ଛୁରା ଭୁସିଦେବା ପାଇଁ ସେ ତିଳେ ହେଲେ ଦ୍ୱିଧା କରନ୍ତି ନାହିଁ ।''

ମୁଁ କହିଲି, 'ମି: ହିଣ୍ଡାର୍‌ଲାଣ୍ଡ, ଆପଣ ଯାହା କହୁଛନ୍ତି ତାହା ବାସ୍ତବିକ ଦୁଃଖଦାୟକ । ଯଦି ରୟତମାନେ ଭୟରେ ଉଭୟଙ୍କୁ କର ଦେଉଥାନ୍ତି ତେବେ ସେମାନଙ୍କ ମଧ୍ୟରୁ କାହାରି ଜଣକ ପ୍ରତି ହେଲେ ମୋର ସମ୍ମାନ ନାହିଁ ।'

ମି: ହିଣ୍ଡାର୍‌ଲାଣ୍ଡ କହିଲେ, ''ନା, ନା– ସେମାନେ ସେପରି ନୁହନ୍ତି । ସେମାନଙ୍କର ଏହି କର ଦେବାରେ ଆନନ୍ଦ ଅଛି, ପୁଣି ଅଛି ନିଃସ୍ୱାର୍ଥପରତା । ଦଳର ଏହି ସବୁ ଲୋକମାନେ ଦଳପତିଙ୍କୁ ଭଲପାଆନ୍ତି ।''

ପଚାରିଲି, ''ଆଚ୍ଛା, ରାଜାଙ୍କର ପ୍ରତିନିଧି କ'ଣ କରୁଛନ୍ତି ?''

''କିଏ, କଲିନ୍ କେମ୍ପବେଲ୍ ? ସେ ଗୋଟିଏ ବିରୁଡ଼ି ବସାରେ ମୁଣ୍ଡ ରଖିଛନ୍ତି । ରୟତମାନଙ୍କୁ ବଳପୂର୍ବକ ସେମାନଙ୍କର କୃଷିକ୍ଷେତ୍ରରୁ ବାହାର କରି ଦିଆଯାଉଛି । ସେମାନଙ୍କ ମଧ୍ୟରୁ ପ୍ରଥମଜଣକ ଆପିନ୍‌ରେ ଅଛି । ସେ କାଲି ସେ ସ୍ଥାନ ପରିତ୍ୟାଗ କରିବ ।''

''ସେମାନେ ଯୁଦ୍ଧ କରିବେ ବୋଲି କ'ଣ ଆପଣ ଭାବୁଛନ୍ତି ?''

''ସେମାନେ ନିରସ୍ତ୍ର ଥିବା ପରି ଜଣାପଡୁଛି; କିନ୍ତୁ ଅନେକ ଅସ୍ତ୍ରଶସ୍ତ୍ର ଗୁପ୍ତସ୍ଥାନମାନଙ୍କରେ ଲୁଚାଇ ରଖାଯାଇଛି । କଲିନ୍ କେମ୍ପବେଲ୍‌ଙ୍କ ସାଙ୍ଗରେ ବହୁତ ସୈନ୍ୟସାମନ୍ତ ଅଛନ୍ତି ।''

ଏହିପରି ଭାବରେ ଆମେ ଦିହେଁ କଥାବାର୍ତ୍ତା କରି କରି ଦିନଯାକ ଚାଲିଥାଉଁ । ରାତିରେ ମି: ହିଣ୍ଡାର୍‌ଲାଣ୍ଡ ମୋତେ ତାଙ୍କ ଘରକୁ ନିମନ୍ତ୍ରଣ କଲେ । ମୁଁ ସେଠାରେ ଶାନ୍ତିରେ ଶୋଇଲି । ତହିଁ ପରଦିନ ସକାଳେ ସେହି ସ୍ଥାନ ଛାଡ଼ିଯିବା ପୂର୍ବରୁ ସେ ତାଙ୍କଠାରେ ଥିବା ଅଳ୍ପ ଅର୍ଥ ମଧ୍ୟରୁ ମୋତେ ଛଅ ପେନି ମୁଦ୍ରା ଦେଲେ । ମୋର ଅର୍ଥର ଆବଶ୍ୟକତା ନଥିଲେ ମଧ୍ୟ ତାଙ୍କର ଆଗ୍ରହ ନ ଭାଙ୍ଗି ତାହା ଗ୍ରହଣ କଲି । ତା'ପରେ ମୁଁ ମୋର ଗନ୍ତବ୍ୟ ପଥରେ ଅଗ୍ରସର ହେଲି ।

## ଲାଲବିଲୁଆର ମୃତ୍ୟୁ

ବର୍ତ୍ତମାନ ମୋତେ ଲିନେଲିବ୍ ଅତିକ୍ରମ କରିବାକୁ ହେଲା । ମି: ହିଣ୍ଡାର୍‌ଲାଣ୍ଡ ମୋତେ ପାରି କରିଦେବା ପାଇଁ ଜଣେ ନାବିକକୁ ପ୍ରବର୍ତ୍ତାଇଲେ । ଦୁଇପାଖରେ ପର୍ବତଶ୍ରେଣୀ ଉଚ୍ଚ, ବନ୍ଧୁର ଏବଂ ଅନାବୃତ । ସ୍ଥାନେ ସ୍ଥାନେ ଛୋଟ ଛୋଟ ଝରଣା ପର୍ବତ ଉପରୁ ଗଡ଼ିଆସି ହ୍ରଦ ଦେହରେ ମିଶିଥାଏ । ଅନ୍ୟତ୍ର ପର୍ବତ ଗାତ୍ର ଛାୟାବଶତଃ କୃଷ୍ଣବର୍ଣ୍ଣ ଧାରଣ କରିଥାଏ । ଏହା ଏକ ରୁକ୍ଷ, ନୀରସ ଦେଶ ପରି ମୋତେ ବୋଧହେଲା । ଆଲାନ୍‌ଙ୍କ ପରି ବ୍ୟକ୍ତିମାନେ ସେ ସ୍ଥାନକୁ କିପରି ଯେ ପସନ୍ଦ କରନ୍ତି ଏହା ଭାବି ମୁଁ ବିସ୍ମିତ ହେଉଥାଏ ।

ପର୍ବତ ଧାରରେ ଥିବା ଜଙ୍ଗଲ ଭିତରେ ନାବିକ ମୋତେ ଡଙ୍ଗାରୁ ଓହ୍ଲାଇଦେଲା । ବଣ ଭିତର ଦେଇ ଗୋଟିଏ କଚ୍ଚାରାସ୍ତା ଯାଇଥାଏ । ରାସ୍ତାଧାରରେ ବସି ମି: ହିଣ୍ଡାର୍‌ଲାଣ୍ଡ ଦେଇଥିବା ରୁଟିରୁ କେତେଖଣ୍ଡ ଖାଇଲି । ଖାଇବା ସମୟରେ ମୁଁ ତା'ପରେ କ'ଣ କରିବି ବୋଲି ଭାବୁଥାଏ । ମୁଁ ବଡ଼ ସନ୍ଦେହରେ ପଡ଼ିଲି । ଆଲାନ୍‌ଙ୍କ ପରି ଜଣେ ଆଇନ୍‌ଅମାନ୍ୟକାରୀ ନିଷ୍ଠୁର ବ୍ୟକ୍ତି ସହିତ କ'ଣ ମୁଁ ଯୋଗଦେବି ନା ମୋ ନିଜ ଦେଶକୁ ଯଥାଶୀଘ୍ର ସମ୍ଭବ ଫେରିଯିବି ? ମି: କେମ୍ପବେଲ୍ ଓ ମି: ହିଣ୍ଡାର୍‌ଲାଣ୍ଡଙ୍କର ଉପଦେଶ ମୁଁ ଭଲ ଭାବରେ ହୃଦୟଙ୍ଗମ କରିଥିଲି; କିନ୍ତୁ କେଜାଣି କାହିଁକି ଆଲାନ୍‌ବ୍ରେକ୍‌ଙ୍କୁ ଆଉଥରେ ସାକ୍ଷାତ କରିବାପାଇଁ ଅନ୍ତର ମଧ୍ୟରେ ଏକ ଉଦ୍ୟମ ଆକାଂକ୍ଷା ଜାଗିଉଠିଲା ।

ମୁଁ ସେଠାରେ ବସି ଏହିପରି ଭାବୁଥାଏ, ଏତିକିବେଳେ ବଣ ଭିତରଦେଇ ମଣିଷ ଏବଂ ଘୋଡ଼ାମାନଙ୍କର ଦୌଡ଼ିବା ଶବ୍ଦ ଶୁଣିଲି । ପରେ ଦେଖିଲି ଚାରିଜଣ ପଥିକ ସେମାନଙ୍କର ଘୋଡ଼ାଗୁଡ଼ିକ ଧରି ଚାଲି ଚାଲି ଆସୁଛନ୍ତି; କାରଣ ସେମାନଙ୍କ ଆସିବା ରାସ୍ତା ବଡ଼ ଦୁର୍ଗମ ହୋଇଥାଏ ।

ପ୍ରଥମଜଣକ ଜଣେ ଦୀର୍ଘକାୟ ବ୍ୟକ୍ତି । ମୁଣ୍ଡର କେଶରାଜି ଈଷତ୍ ଲାଲ । ଦ୍ୱିତୀୟ ବ୍ୟକ୍ତି ଜଣେ ଆଇନ୍‌ଜୀବୀ । ତୃତୀୟ ବ୍ୟକ୍ତି ଜଣେ ଭୃତ୍ୟ । ସେ ନିଜ ମୁନିବର ସ୍କଟଲାଣ୍ଡୀୟ ଚେକ୍ ପୋଷାକ ପରିଧାନ କରିଥାଏ । ଚତୁର୍ଥ ବ୍ୟକ୍ତିଜଣକ ଜଣେ କର୍ମଚାରୀ । ମୁଁ ଯଦି ପାର୍ବତ୍ୟ ଅଞ୍ଚଳ ବିଷୟରେ ବିଶେଷ ଅଜ୍ଞ ହୋଇ ନଥାନ୍ତି ତେବେ ମୁଁ ସେହି ଭୃତ୍ୟର ଚେକ୍ ପୋଷାକକୁ କେମ୍ପବେଲ୍‌ମାନଙ୍କର ପୋଷାକ

ବୋଲି ଜାଣନ୍ତି । ମୁଁ ସଙ୍ଗେ ସଙ୍ଗେ ଜାଣିଥାନ୍ତି ଯେ, ସେ ନିଶ୍ଚିତଭାବରେ ଗ୍ଲେନିଓରର କଲିନ୍ କେମ୍ପବେଲ୍– ଯାହାକୁ 'ଲାଲବିଲୁଆ' ବୋଲି ସମସ୍ତେ କହନ୍ତି ।

ପ୍ରଥମ ବ୍ୟକ୍ତିଜଣକ ମୋର ନିକଟବର୍ତ୍ତୀ ହେବାରୁ ମୁଁ ଛିଡ଼ା ହୋଇଯାଇ ଆପିନ୍‌କୁ ଯିବା ପାଇଁ ରାସ୍ତା କେଉଁଆଡ଼େ ବୋଲି ସାହସରେ ପଚାରିଲି । ସେ ଛିଡ଼ା ହୋଇ ମୋ ଉପରେ କିପରି ଏକ ସନ୍ଦେହପୂର୍ଣ୍ଣ ଦୃଷ୍ଟି ପକାଇଲେ । ତା'ପରେ ଘୂରିପଡ଼ି ସେ ଓକିଲଜଣଙ୍କୁ କହିଲେ, ''ମାଙ୍ଗୁ, ଏହା ନିଶ୍ଚୟ ଏକ ଶୁଭ ସୂଚନା ।'' ତା'ପରେ ସେ ମୋ ଆଡ଼କୁ ମୁହଁ ଫେରାଇ ପଚାରିଲେ, ''ଆପିନ୍‌ରେ ତୁମେ କ'ଣ ଚାହୁଁଛ ?''

କହିଲି, ''ସେଠାରେ ସେହି ଯେଉଁଲୋକ ବାସ କରୁଛନ୍ତି ତାଙ୍କୁହିଁ ଚାହୁଁଛି ।''

କଲିନ୍ କେମ୍ପବେଲ ଚିନ୍ତାକରି କହିଲେ, ''ତୁମେ ବୋଧହୁଏ ଗ୍ଲେନସ୍‌ର ଜେମସ୍‌କୁ ଚାହୁଁଛ ?'' ପୁଣି ଓକିଲଜଣଙ୍କୁ କହିଲେ, ''ଆଚ୍ଛା ମାଙ୍ଗୁ, ସେ କ'ଣ ତାଙ୍କ ଲୋକମାନଙ୍କୁ ସଂଗ୍ରହ କରିବାରେ ଲାଗିଛନ୍ତି ବୋଲି ଭାବୁଛ ?''

ଉତ୍ତରରେ ଓକିଲଜଣକ କହିଲେ, ''ସୈନ୍ୟମାନେ ପହଞ୍ଚିବା ପର୍ଯ୍ୟନ୍ତ ଚାଲନ୍ତୁ ଏଠାରେ ଅପେକ୍ଷା କରିବା । ଏହା ଏକ ବିପଜ୍ଜନକ ଦେଶ । ବିଶେଷ କରି ଆଜି ଯେତେବେଳେ ଏପରି ଗୋଟିଏ ଖରାପ ଖବର ପାଉଛେ ସତର୍କତା ଏକାନ୍ତ ଅବଲମ୍ବନୀୟ ।''

ବର୍ତ୍ତମାନ ସେହି ଲାଲବେଶଧାରୀ ଭଦ୍ରଲୋକଙ୍କୁ ମୁଁ ଭଲରୂପେ ଚିହ୍ନିଲି ଏବଂ ମୋର ଉପସ୍ଥିତି ସମ୍ବନ୍ଧରେ ତାଙ୍କୁ ବୁଝାଇଦେବାକୁ ଚେଷ୍ଟା କଲି । କହିଲି, ''ମୁଁ ଆପଣଙ୍କର କୌଣସି ଅନିଷ୍ଟ ଚିନ୍ତା କରୁନାହିଁ । ମୁଁ ଆର୍‌ଡ଼ିସିଏଲ୍‌ଙ୍କର ଲୋକ ନୁହେଁ କିମ୍ବା ଆପଣଙ୍କର ଲୋକ ନୁହେଁ । ରାଜା ଜର୍ଜଙ୍କର ମୁଁ ଜଣେ ସାଧୁ ପ୍ରଜା ମାତ୍ର ।''

ଉତ୍ତରରେ 'ଲାଲବିଲୁଆ' କହିଲେ, ''ଉତ୍ତମ, କିନ୍ତୁ ରାଜା ଜର୍ଜଙ୍କର ଜନୈକ ସାଧୁ ପ୍ରଜା କାହିଁକି ନିଜ ଦେଶଠାରୁ ଏତେ ଦୂର ଆସି ଆର୍‌ଡିସିଏଲ୍‌ଙ୍କର ଆଇନଅମାନ୍ୟକାରୀ ଭ୍ରାତା ଗ୍ଲେନସର୍ ଜେମସ୍ କୁ ଖୋଜୁଛନ୍ତି ? ରାଜାଙ୍କର ଆଇନ ଜାରି କରିବା ପାଇଁ ବାର ପ୍ଲାଟୁନ ସୈନ୍ୟ ମୋ ପଛେ ପଛେ ଆସୁଛନ୍ତି । ଏପରି ଏକ ବିପଜ୍ଜନକ ସମୟରେ ଜଣେ ଅଜ୍ଞାତ ବ୍ୟକ୍ତି ପକ୍ଷରେ ଆପିନ୍ ଯିବାପାଇଁ ରାସ୍ତା ପଚାରି ବୁଲିବା ଆଦୌ ନିରାପଦ ନୁହେଁ ।''

ସେ ଓକିଲବାବୁଙ୍କ ସହିତ କଥାବାର୍ତ୍ତା ହେବାପାଇଁ ପୁଣିଥରେ ବୁଲିପଡ଼ିଲେ; ମାତ୍ର ଏହି ସମୟରେ ପାହାଡ଼ର ଶୀର୍ଷଦେଶରୁ ଏକ ଗୁଳି ଆସି ତାଙ୍କୁ ଆଘାତ କଲା ଏବଂ ମୁହୂର୍ତ୍ତକ ମଧ୍ୟରେ କଲିନ୍ କେମ୍ପବେଲ୍ ରାସ୍ତା ଉପରେ ଟଳିପଡ଼ିଲେ । 'ଓଃ' ମରିଗଲି ମରିଗଲି, ବୋଲି ସେ ବହୁବାର ରଡ଼ି ଛାଡ଼ିଲେ । ଆହତ କେମ୍ପବେଲ୍ ସେମାନଙ୍କୁ ଚାହୁଁଥାନ୍ତି । ଦୃଷ୍ଟିରେ ଭୟର ଚିହ୍ନ ସୁସ୍ପଷ୍ଟ । ଅସ୍ପଷ୍ଟସ୍ୱରରେ ସେ କହିଲେ, ''ତୁମେମାନେ ନିଜ ନିଜର ଯତ୍ନ ନିଅ । ମୁଁ ବିଦାୟନେଲି ।'' ଏକ ଦୀର୍ଘଶ୍ୱାସ ଛାଡ଼ି ସେ ମୁଣ୍ଡ ଭାଙ୍ଗିଦେଲେ ଏବଂ ଚାହୁଁ ଚାହୁଁ ତାଙ୍କର ପ୍ରାଣବାୟୁ ଉଡ଼ିଗଲା ।

ଓକିଲବାବୁ ପଦେହେଲେ କଥା କହିପାରିଲେ ନାହିଁ । ମଲାଲୋକର ମୁଖ ମଣ୍ଡଳ ପରି ତାଙ୍କର ମୁଖମଣ୍ଡଳ ରକ୍ତହୀନ ହୋଇ ଶେତାପଡ଼ିଗଲା । ଛୋଟ ପିଲାଟିଏ ପରି ଭୃତ୍ୟଟି କାନ୍ଦି ବାହୁନିବାରେ ଲାଗିଲା । କର୍ମଚାରୀଜଣକ ସୈନ୍ୟମାନଙ୍କୁ ଡାକିବା ପାଇଁ ପଛକୁ ଧାଇଁଲେ । ମୁଁ ସେହିଠାରେ ଛିଡ଼ାହୋଇ ଭୟରେ ଚାହିଁରହିଥାଏ ।

ଅଳ୍ପ ସମୟ ଭିତରେ ମୁଁ ପ୍ରକୃତିସ୍ଥ ହୋଇ 'ନରହନ୍ତା' 'ନରହନ୍ତା' ବୋଲି ଚିତ୍କାର କରି କରି ଯେତେ ଶୀଘ୍ର ପାରେ ପାହାଡ଼ର ବନ୍ଧୁରପଥରେ ଉପରକୁ ଉପରକୁ ଉଠିବାରେ ଲାଗିଲି । ରାସ୍ତାଠାରୁ ଅନେକ ଦୂର ଉପରକୁ ଯିବାପରେ ମୁଁ ପାହାଡ଼ର ଅଧିକାଂଶ ସ୍ଥାନ ପରିଷ୍କାର ଭାବରେ ଦେଖିପାରିଲି ଏବଂ ଅଳ୍ପଦୂରରେ ନରହନ୍ତାର ସମ୍ମୁଖୀନ ମଧ୍ୟ ହେଲି । କଳାକୋଟ୍ ପରିହିତ ଏକ ଭୀମକାୟ ପୁରୁଷ– ହାତରେ ଗୋଟିଏ ସୁଦୀର୍ଘ ବନ୍ଧୁକ । ମୁଁ ଚିତ୍କାର କରିଉଠିଲି, ''ଏହିଠାରେ, ଏହିଠାରେ ମୁଁ ତାକୁ ପାଇଛି ।'' ହତ୍ୟାକାରୀ ମୋ ଉପରେ ଥରେ ଦୃଷ୍ଟିପାତ କରି ଦୌଡ଼ିବାକୁ ଆରମ୍ଭ କଲା ଓ ଅଳ୍ପ ସମୟ ଭିତରେ ପାହାଡ଼ର ଅପରପାର୍ଶ୍ୱରେ କେଉଁଆଡ଼େ ଅଦୃଶ୍ୟ ହୋଇଗଲା । ମୁଁ ମଧ୍ୟ ଖୁବ୍ ଜୋର୍‌ରେ ଦୌଡ଼ୁଥାଏ । ଏପରି ସମୟରେ ଜଣେ କିଏ ମୋତେ ଛିଡ଼ାହେବା ପାଇଁ ଡାକିଲେ । ପଛକୁ ଫେରି ତଳେ ରାସ୍ତା ଉପରେ ଓକିଲ ଓ କର୍ମଚାରୀ ଦ୍ୱୟଙ୍କୁ ଦେଖିଲି । ସେମାନେ ହାତ ହଲାଇ ଚିତ୍କାର କରି ମୋତେ ଡାକୁଥାନ୍ତି । ଠିକ୍ ଏହି ସମୟରେ ଲାଲଟୋପିଧାରୀ ସୈନ୍ୟମାନଙ୍କୁ ଜଙ୍ଗଲରୁ ବାହାରି ଆସୁଥିବାର ଦେଖିଲି ।

ମୁଁ ବଡ଼ ପାଟି କରି ଉତ୍ତର ଦେଲି, ''ମୁଁ କାହିଁକି ଫେରିଯିବି, ତୁମେମାନେ ବରଂ ଏଠାକୁ ଚାଲିଆସ ।'' ଏହାପରେ ଓକିଲବାବୁ ସୈନ୍ୟମାନଙ୍କୁ ଯେଉଁସବୁ କଥା କହିଲେ ତାହା ଶୁଣିପାରି ମୋ ମନରେ ନୂତନ ପ୍ରକାର ଭୟ ସଂଚାର କରୁଥାଏ । ସେ କହୁଥାନ୍ତି, ''ଯେଉଁଲୋକ ସେ ପିଲାକୁ ଧରିଦେବ ତାକୁ ଦଶପାଉଣ୍ଡ ପୁରସ୍କାର ମିଳିବ । ସେ ହତ୍ୟାକାରୀମାନଙ୍କ ମଧ୍ୟରୁ ଅନ୍ୟତମ । କଥାବାର୍ତ୍ତା କରି ଆମ୍ଭମାନଙ୍କୁ ଅଟକାଇ ରଖିବା ପାଇଁ ତାକୁ ଏଠାରେ ରଖାଯାଇଥିଲା ।''

ଏହା ଶୁଣି ମୁଁ ନିଜକୁ ବିପନ୍ନ ମନେକଲି । ସୈନ୍ୟମାନେ ଧାଇଁବାକୁ ଆରମ୍ଭ କଲେ ଓ କେତେକ ସୈନ୍ୟ ମୋତେ ଲକ୍ଷ୍ୟକରି ନିଜନିଜର ବନ୍ଧୁକ ଟେକିଲେ । ତଥାପି ମୁଁ ନୀରବ ନିଶ୍ଚଳ ଭାବେ ଛିଡ଼ା ହୋଇଥାଏ । ମୋର ଖୁବ୍ ନିକଟରେ ଥାଇ କିଏ ଜଣେ କହିଲେ, ଗଛ ଗହଳି ଭିତର ଦେଇ ଏଠାକୁ ଚାଲିଆସ ।'' ମୁଁ କ'ଣ କରିଯାଉଛି କିଛି ଜାଣିପାରୁ ନଥାଏ; କିନ୍ତୁ ସେହି ଅପରିଚିତ ବ୍ୟକ୍ତିଙ୍କର ନିର୍ଦ୍ଦେଶାନୁଯାୟୀ ମୁଁ ଭିତରକୁ ପ୍ରବେଶ କଲି । ଠିକ୍ ଏହିପରି ସମୟରେ ବନ୍ଧୁକର ଗୁଳି ଗଛଗୁଡ଼ିକର ଶାଖାପ୍ରଶାଖା ଭିତରେ ଧ୍ୱନିତ ହେଲା । ଗଛଗୁଡ଼ିକର ଠିକ୍ ତଳେ ମୁଁ ଆଲାନ୍ ବ୍ରେକ୍‌କୁ ହାତରେ ଖଣ୍ଡିଏ ବନ୍‌ଶୀଖଡ଼ା ଧରି ଛିଡ଼ାହୋଇଥିବାର ଦେଖିଲି । ସେ ମୋତେ ଦେଖି ଶୁଭେଚ୍ଛା ଜଣାଇଲେ ନାହିଁ । କେବଳ କହିଲେ, 'ଆସ' ।

ଏହା ପରେ ସେ ପାହାଡ଼ର ଧାରେ ଧାରେ ବେଳାତୁଳିଶ ଆଡ଼କୁ ଧାଇଁଲେ । ମୁଁ ବୋକାପରି ତାଙ୍କୁ ଅନୁଧାବନ କଲି । ଦୌଡ଼ୁ ଦୌଡ଼ୁ କେତେବେଳେ ଆମେ ଛିଡ଼ାହୋଇ ରହୁଥାଉଁ, ପୁଣି କେତେବେଳେ ବା ଛାତିରେ ଭରାଦେଇ ଘୋଷାରିହୋଇ ଯିବାକୁ ହେଉଥାଏ । ଯନ୍ତ୍ରଣାରେ ଛାତି ଫାଟିଯିବା ପରି ଲାଗୁଥାଏ । କୌଣସି କଥା ଭାବିବା ପାଇଁ ମୋର ସମୟ ନଥାଏ କିମ୍ବା କଥା କହିବା ପାଇଁ ମୋର ଶକ୍ତି ନଥାଏ । ବେଳେ ବେଳେ ଆଲାନ୍ ଠିଆହୋଇ ପଛକୁ ଫେରି ମୋତେ ଚାହୁଁଥାନ୍ତି ଏବଂ ସେହି ସମୟରେ ତଳୁ ସୈନ୍ୟମାନଙ୍କର ବିକଟ ଚିତ୍କାର ଶ୍ରୁତିଗୋଚର ହେଉଥାଏ ।

ପନ୍ଦର ମିନିଟ୍ ପରେ ଆଲାନ୍ ଛିଡ଼ାହେଲେ ଏବଂ ଗୋଡ଼ହାତ ମେଲାଇ ଗୋଟିଏ ବୃଦାମୂଳେ ଶୋଇରହିଲେ । ମୋ ଆଡ଼କୁ ଚାହିଁ କହିଲେ, ''ବର୍ତ୍ତମାନ ସମୟ ବଡ଼ ବିପଜ୍ଜନକ । ଜୀବନ ରକ୍ଷାପାଇଁ ମୁଁ ଯାହା କରୁଛି ତୁମେ ସେହିପରି କର ।''

ପୂର୍ବର ଗତି ଅବ୍ୟାହତ ରଖି, ମାତ୍ର ନିଜକୁ ଲୁଚାଇବା ପାଇଁ ଅଧିକ ଯତ୍ନଶୀଳ ହୋଇ, ଠିକ୍ ଯେଉଁ ରାସ୍ତା ଧରି ଆମେ ଆସିଥିଲୁ ପାହାଡ଼ ଉପର ଦେଇ ସେହି ରାସ୍ତାରେ ଫେରିଗଲୁଁ । ଶେଷରେ ଯେଉଁ ଜଙ୍ଗଲରେ ମୁଁ ପ୍ରଥମେ ଆଲାନ୍‌ଙ୍କୁ ପାଇଥିଲି ସେହିଠାରେ ପହଞ୍ଚିଲୁ । ଆଲାନ୍ ଗୋଟିଏ ବୃଦାମୂଳରେ ଶୋଇ କୁକୁର ପରି ଧଇଁ ସଇଁ ହେବାରେ ଲାଗିଲେ । ମୁଁ ମଧ ତାଙ୍କ ପାଖରେ ମଲାଲୋକଟିଏ ଭଳି ପଡ଼ିରହିଲି ।

# ଜଙ୍ଗଲ ଭିତରେ ପଳାୟନ

ଆଲାନ୍ ପ୍ରଥମେ ପ୍ରକୃତିସ୍ଥ ହେଲେ । ମୋ ପାଖରେ ବସି କହିଲେ, ''ଗୋଟିଏ ବଡ଼ ଦୌଡ଼ ହୋଇଗଲା, ଡେଭିଡ୍ !''

ମୁଁ କିଛି ନ କହି ଚୁପ୍ ରହିଲି । ସେଦିନର ହତ୍ୟାକାଣ୍ଡ ମୁଁ ନିଜ ଆଖିରେ ଦେଖିଥିଲି । ବିଚରା ଯେଉଁ ଭଦ୍ରଲୋକଙ୍କୁ ସେଦିନ ହତ୍ୟାକରାଗଲା ଆଲାନ୍ ତାଙ୍କୁ ଘୃଣା କରୁଥିଲେ । ଆଲାନ୍ ଜଙ୍ଗଲ ଭିତରେ ନିଜକୁ ଲୁକ୍‌କାୟିତ ରଖିବାର ଚେଷ୍ଟା କରୁଥାନ୍ତି । ଏହିଥିରୁ ସ୍ପଷ୍ଟ ଜଣାପଡୁଥାଏ ହୁଏତ ସେ ନିଶ୍ଚିତ ଭାବରେ ହତ୍ୟାକାରୀ । ତେଣୁ ମୁଁ ତାଙ୍କ ମୁହଁ ଆଡ଼କୁ ଚାହିଁପାରିଲି ନାହିଁ ।

ସେ ମୋତେ ପୁଣି ପଚାରିଲେ, ''ତୁମେ କ'ଣ ଖୁବ୍ କ୍ଲାନ୍ତି ବୋଧ କରୁଛ ଡେଭିଡ୍ ?''

କହିଲି, ''ନା, ମୋର କ୍ଲାନ୍ତି ଚାଲିଗଲାଣି, ମୁଁ ବର୍ତ୍ତମାନ ବେଶ୍ ଭଲଭାବରେ କଥାବାର୍ତ୍ତା କରିପାରିବି । ଚାଲ ଆଲାନ୍, ଏବେ ପରସ୍ପର ପରସ୍ପରଠାରୁ ବିଚ୍ଛିନ୍ନ ହୋଇଯିବା । ତୁମକୁ ମୁଁ ଖୁବ୍ ଭଲପାଏ; କିନ୍ତୁ ତୁମର ଲକ୍ଷ୍ୟ ଓ କର୍ମପନ୍ଥା ମୋଠାରୁ ସମ୍ପୂର୍ଣ୍ଣ ପୃଥକ୍ ।''

ଆଲାନ୍ ଗମ୍ଭୀର ହୋଇ କହିଲେ, ''ଦେଖ ଡେଭିଡ୍, କୌଣସି ଯୁକ୍ତିଯୁକ୍ତ କାରଣ ନ ଦେଖାଇଲେ ମୁଁ ତୁମକୁ କଦାପି ମୋଠାରୁ ଛାଡ଼ିବି ନାହିଁ । ତୁମେ ଏପରି କହିବାର କାରଣ କ'ଣ ?''

ମୁଁ ବିରକ୍ତ ହୋଇ କଲିନ୍ କେମ୍ପବେଲ୍‌ଙ୍କ ବିଷୟରେ ତାଙ୍କୁ ପଚାରିଲି । ଆଲାନ୍‌ଙ୍କ ବ୍ୟତୀତ ତାଙ୍କର ହତ୍ୟାକାରୀ ଆଉ କିଏ ହୋଇପାରେ ? କିନ୍ତୁ ଆଲାନ୍ ସେ କାମ କରିନାହାନ୍ତି ବୋଲି ଦୃଢ଼ତାର ସହିତ ପ୍ରକାଶ କଲେ । ସେ କହିଲେ, ''ମୁଁ ତାଙ୍କୁ ହତ୍ୟା କରିଥିଲେ ହାତରେ ବନ୍‌ଶୀଖଡ଼ା ନ ଧରି ନିଶ୍ଚୟ ଗୋଟିଏ ବନ୍ଧୁକ ଧରିଥାନ୍ତି । ମୁଁ କେବେହେଲେ ଏପରି କାଣ୍ଡ ମୋ ନିଜ ଦେଶରେ ଭିଆଇ ମୋ ଦଳପ୍ରତି ଅସୁବିଧା ଟାଣି ଆଣିବି ନାହିଁ । ଅବଶ୍ୟ ଯେଉଁ ଲୋକ ଗୁଳିକରି ତାଙ୍କୁ ମାରିଲା ମୁଁ ତାକୁ ଦେଖିଛି ଏବଂ ତାଙ୍କୁ ବିପଦ ମୁହଁରୁ ବଞ୍ଚାଇବାପାଇଁ ନିଜେ ହତ୍ୟାକାରୀର ଅଭିନୟ କରି ଗୋଡ଼ାଉ ଥିବା ସୈନ୍ୟମାନଙ୍କର ଦୃଷ୍ଟି ମୋ ଆଡ଼କୁ ଆକର୍ଷଣ କରିଛି । ଏହା ସତ୍ୟ ଯେ, ମୁଁ କଲିନ୍ କେମ୍ପବେଲ୍‌ଙ୍କ ମୃତ୍ୟୁରେ ଖୁବ୍ ଆନନ୍ଦିତ । ତେଣୁ ହତ୍ୟାକାରୀ ଯେପରି ଧରା ନପଡ଼େ ମୁଁ ଏକଥା ଚାହେଁ । ତେବେ ମୁଁ ଏହି ହତ୍ୟାରେ କୌଣସିପ୍ରକାର ଅଂଶ ଗ୍ରହଣ କରିନାହିଁ ।''

ଶେଷରେ ମୁଁ ତାଙ୍କ କଥା ବିଶ୍ୱାସ କଲି । ଆମେ ଦିହେଁ ହତ୍ୟା ସମ୍ପର୍କରେ ନିର୍ଦ୍ଦୋଷ ହେଲେହେଁ ଆମ ଉପରେ ସମସ୍ତ ସନ୍ଦେହ ଠୁଳ ହୋଇଛି । ତାହା ଥିଲା କେମ୍ପବେଲ୍‌ମାନଙ୍କର ଦେଶ । ଧରାପଡ଼ିଲେ ଦୋଷୀ ପ୍ରମାଣିତ ହେବୁ ଏବଂ ଆମ୍ଭମାନଙ୍କୁ ପ୍ରାଣଦଣ୍ଡ ଭୋଗ କରିବାକୁ ହେବ । ଆଲାନ୍ କହିଲେ, ''ଦେଖ ଡେଭିଡ୍, ଆମେ ବର୍ତ୍ତମାନ ପାର୍ବତ୍ୟ ଅଞ୍ଚଳରେ ରହିଛେ । ମୁଁ ତୁମକୁ ଦୌଡ଼ିବାକୁ ନିର୍ଦ୍ଦେଶ ଦେବା ମାତ୍ରେ ତୁମେ ଦୌଡ଼ିବ । ବୁଦା ଭିତରେ ଆମକୁ ଅଗ୍ରସର ହେବାକୁ ପଡ଼ିବ ବା ମୃତ୍ୟୁବରଣ କରିବାକୁ ହେବ ।'' ସେହି ଦୁଇ କଥା ଭାବି ଆମେ ଅସ୍ଥିର ହୋଇପଡ଼ିଲୁ ଏବଂ ଅତି ଶୀଘ୍ର ସେ ସ୍ଥାନ ଛାଡ଼ି ଅଗ୍ରସର ହେଲୁ ।

ସନ୍ଧ୍ୟାରେ ପାତଳ ଅନ୍ଧାର ବନଭୂମି ଭିତରେ ଅଧିକ ଗାଢ଼ ହୋଇଥାଏ । ନିଜ ନିଜ ଭିତରେ ଦୁଃସାହସିକ ଯାତ୍ରା ସମ୍ବନ୍ଧରେ କଥାବାର୍ତ୍ତା କରି ଆମେ ଦିହେଁ ଚାଲିଥାଉଁ । ଦିହେଁ ପୁଣି ଥରେ ଏକତ୍ରିତ ହେବା ବେଶ୍ ଆନନ୍ଦଦାୟକ ବୋଧହେଉଥାଏ । ଆଲାନ୍ ମୋତେ କହିଲେ ଯେ– ହୋସିଜିନ୍, ଅନେକ ନାବିକ ଏବଂ ସେ ନିଜେ ଗୋଟିଏ ଡଙ୍ଗାରେ ଜାହାଜ ଛାଡ଼ି ଆସିଲେ । ସେ ଆପିନ୍ ଆଡ଼କୁ ଆସିଲେ ଏବଂ ସେମାନେ ଦକ୍ଷିଣାଭିମୁଖୀ ହେଲେ । ସେ ଭାବିଥିଲେ ଯେ ମୁଁ ଆଉ ବଞ୍ଚିନଥିବି । କାଳେ ସୌଭାଗ୍ୟକ୍ରମେ କୂଳରେ ଲାଗି ମୁଁ ବଞ୍ଚିଯାଇଥିବି ସେଥିପାଇଁ ସେ ଯେ ରୁପାବୋତାମଧାରୀ ବାଳକର ଯତ୍ନ ନେବାପାଇଁ ଖବର ପଠାଇଥିଲେ ।

କଲିନ୍ କେମ୍ପବେଲ୍‌ଙ୍କର ହତ୍ୟା ଖବର ଦ୍ରୁତଗତିରେ ପ୍ରସାରିତ ହେଲା । ପ୍ରତ୍ୟେକ କୁଟୀରରେ ଉତ୍ତେଜନା ଏବଂ ଭୟ ରାଜତ୍ୱ କରୁଥିବାର ଆମେ ଦେଖିଲୁ ।

ଲାଲ୍‌କୋଟ୍‌ଧାରୀ ସୈନିକମାନେ ଆସି ଘର ଖାନତଲାସ କରିବା ପୂର୍ବରୁ ସମସ୍ତେ ନିଜ ନିଜ ପାଖରେ ଥିବା ବନ୍ଧୁକ ବା ଅନ୍ୟାନ୍ୟ ଅସ୍ତ୍ରଶସ୍ତ୍ର ଲୁଚାଇ ଦେଇଥିଲେ । ସ୍କଟଲାଣ୍ଡର ଏହି ଅଞ୍ଚଳରେ ନିଜ ନିଜକୁ ଲୁଚାଇ ରଖିବା ଭଳି ନିରାପଦ ସ୍ଥାନ ମିଳିବାର ଆଶା ନଥିଲା । କାଳେ ସେମାନେ ଗ୍ଲେନ୍‌ସର ଜେମ୍‌ସଙ୍କ ନିକଟକୁ ଗଲେ ସେ ହତ୍ୟା ସଂକ୍ରାନ୍ତରେ ସନ୍ଦେହର ପାତ୍ର ହୋଇ ପଡ଼ିବେ, ସେଥିପାଇଁ ସେ ମଧ୍ୟ ଖବର ପଠାଇ ସେମାନଙ୍କୁ ତାଙ୍କ ନିକଟକୁ ଯିବା ପାଇଁ ମନାକରିଥିଲେ । ତେଣୁ ଲାଲ୍‌କୋଟ୍‌ଧାରୀ ସୈନିକମାନେ ଦେଶର ସୀମାନ୍ତ ଅଞ୍ଚଳ ଅବରୋଧ କରି ରହିବା ପୂର୍ବରୁ ସେମାନେ ନିମ୍ନାଞ୍ଚଳକୁ ପଳାଇଯିବା ହିଁ ସେମାନଙ୍କର ଏକମାତ୍ର ଆଶା ଥିଲା ।

ସାରାରାତି ଆମେ ଚାଲିଥାଉଁ । ସମୟସମୟରେ ଦୌଡ଼ୁଥାଉ । ସକାଳବେଳକୁ ଆମେ ଗ୍ଲେନ୍‌କୋ ଉପତ୍ୟକାରେ ପହଞ୍ଚିଲୁ । ଏହା ଏକ ଶ୍ୱାପଦସଙ୍କୁଳ ସ୍ଥାନ । ଚତୁଃପାର୍ଶ୍ୱ ପର୍ବତଶ୍ରେଣୀ ଦ୍ୱାରା ପରିବେଷ୍ଟିତ । ପର୍ବତ ଉପରେ ଘାସ ନାହିଁ କି ଗଛ ନାହିଁ– ଅଛି କେବଳ ଟାଙ୍ଗରା ପ୍ରସ୍ତରଖଣ୍ଡ ଏବଂ କରାଳରୂପୀ ଖରସ୍ରୋତା ନଦୀ । ସେତେବେଳକୁ ସୈନ୍ୟମାନେ ସେ ସ୍ଥାନରେ ପହଞ୍ଚି ଯାଇଥିଲେ । ସୂର୍ଯ୍ୟ ଉପରକୁ ଉଠିବାରୁ ଆମେ ସେମାନଙ୍କୁ ପାହାଡ଼ ଧାରେ ଧାରେ ଆମକୁ ଘେରି ରହିବାର ଦେଖିଲୁ । ମାତ୍ର ସେମାନେ ଆମକୁ ଦେଖିବା ପୂର୍ବରୁ ଆଲାନ୍ ମୋତେ ଗୋଟିଏ ବଡ଼ ପ୍ରସ୍ତରଖଣ୍ଡ ଉପରକୁ ଟେକିନେଲେ । ଏହାର ଉପରିଭାଗରେ ବେସିନ୍ ପରି ଗୋଟିଏ ଖୋପ ଥାଏ । ସେହିଠାରେ ଆମେ ଦିହେଁ ସାରାଦିନ ପଡ଼ିରହି ଜିଅନ୍ତା ମାଛ ତାତିଲା କଡ଼େଇରେ ପଡ଼ି ଛଟପଟ ହେଲାପରି ପ୍ରଚଣ୍ଡ ସୂର୍ଯ୍ୟତାପରେ ତହଲ ବିକଳ ହେଉଥାଉ । ଆମ ଚାରିପଟେ ପ୍ରହରୀମାନେ ଜଗି ରହିଥାନ୍ତି । ଅପରାହ୍ଣ ବିଗତପ୍ରାୟ । ଗଡ଼ାଣିଆ ଖରାରେ ସୈନ୍ୟମାନେ ବିଶ୍ରାମ ନେଇଥାନ୍ତି । ତୃଷାରେ ଆମ ତଣ୍ଟି ଶୁଖିଯାଉଥାଏ । ସେହି ଅସହନୀୟ ତୃଷାରେ ଧୀରେ ଧୀରେ ମୃତ୍ୟୁବରଣ କରିବା ଅପେକ୍ଷା ଜଗିରହିଥିବା ସୈନ୍ୟମାନଙ୍କ ହାତରେ ଧରାପଡ଼ିବା ଶ୍ରେୟସ୍କର ଭାବି ଲୁଚି ରହିଥିବା ସ୍ଥାନରୁ ବାହାରି ଆମେ ତଳକୁ ଓହ୍ଲାଇ ଆସିଲୁ । ଭୂଇଁ ସହିତ ଲାଗି ଘୋଷରି ଘୋଷରି, ପ୍ରତ୍ୟେକ ପ୍ରସ୍ତରଖଣ୍ଡ ପଛପଟେ ଛପି ଛପି ଆମେ ଶେଷରେ ଆସି ଏକ ଝରଣା କୂଳରେ ପହଞ୍ଚିଲୁ । ଝରଣାର ସୁଶୀତଳ ଜଳ ପାନକରି ଆମେ ତୃଷା ନିବାରଣ କଲୁ । ଦିନ ଶେଷରେ ରାତି ଆସିଗଲା । ରାତିର ଅନ୍ଧକାରରେ ଆମେ ପୁଣି ଥରେ ପାହାଡ଼ ଉପରକୁ ଉଠିଲୁ । ରାତିର କିଛି ସମୟ ଚାଲି ଚାଲି, ପୁଣି କିଛି ସମୟ ଦୌଡ଼ି ଦୌଡ଼ି ଅତିବାହିତ ହେବା ପରେ ଆମେ ଆସି ଗୋଟିଏ ସ୍ଥାନରେ ପହଞ୍ଚିଲୁ– ଯାହାର ନାମ 'ହେଗ୍' । ଏହା କୋରିନାଖିରେ ଥିବା ଗୋଟିଏ ସ୍ଥାନ । ଆଲାନ୍ ସ୍ଥିର କଲେ ଯେ, ସେହିଠାରେ ବିଶ୍ରାମ ନେବା ଆମ ପକ୍ଷରେ ନିରାପଦ ହେବ । ଏହା ପାହାଡ଼ ଉପରିସ୍ଥ ଗୋଟିଏ ଗୁମ୍ଫା । ସୁଶ୍ୟାମଳ ଅରଣ୍ୟ ଦ୍ୱାରା ପରିବେଷ୍ଟିତ । ନିକଟରେ ସ୍ୱଚ୍ଛ ଜଳର ଝରଣାଟିଏ ବହିଯାଉଥାଏ । ଆମେ ସେଠାରୁ ପ୍ରଚୁର ମାଛ ସଂଗ୍ରହ କଲୁ । ସେଇ ମାଛ ଖାଇ ଏବଂ ଘାସରେ ଶୋଇ

ଖୁବ୍ ଆରାମରେ ଆମେ ସେଠାରେ ପାଞ୍ଚଟି ଦିନ କଟାଇଦେଲୁ । ସେହିଠାରେ ଆଲାନ୍ ଖଣ୍ଡା ଧରି ଯୁଦ୍ଧ କରିବା କୌଶଳ ମୋତେ ଶିକ୍ଷାଦେଲେ ।

ଆଲାନ୍ ଦିନେ ପାହାଡ଼ ତଳକୁ ଯାଇ କୌଣସି ଏକ ଘରୁ ତାଙ୍କ ଦଳର ଖବର ପାଇଲେ । ସେ ଜାଣିବାକୁ ପାଇଲେ ଯେ, ତାଙ୍କ ମାଲିକଙ୍କ ଭାଇ ଗ୍ଲେନ୍‌ସର ଜେମ୍‌ସ୍ ଏବଂ ତାଙ୍କର ଭୃତ୍ୟମାନେ କଲିନ୍ କେମ୍ପବେଲ୍‌ଙ୍କ ହତ୍ୟାରେ ସାହାଯ୍ୟ କରିଥିବା ସନ୍ଦେହ ହେବାରୁ ବନ୍ଦୀ ହୋଇ ରହିଛନ୍ତି । ପ୍ରକୃତ ହତ୍ୟାକାରୀ ଦୁଇଜଣଙ୍କୁ ଧରାଇ ଦେବାକୁ ପୁରସ୍କାର ଘୋଷଣା କରାଯାଇଛି । ସେହି ଦୁଇଜଣଙ୍କ ମଧ୍ୟରୁ ଜଣେ ଆଲାନ୍ ଓ ଅନ୍ୟଜଣକ ମୁଁ । ଯେତେ ଶୀଘ୍ର ସମ୍ଭବ ସେ ଦେଶ ଛାଡ଼ି ଚାଲିଯିବା ଯେ ନିତାନ୍ତ ସମୀଚୀନ ସେଥିରେ ସନ୍ଦେହର ଅବକାଶ ନଥିଲା । ଧରାପଡ଼ିଲେ ଆମପାଇଁ ଫାଶୀଦଣ୍ଡ ସୁନିଶ୍ଚିତ ଜାଣି ଆମେ ଆମର ଜିନିଷପତ୍ର ସହ ଦୀର୍ଘ ଯାତ୍ରା ଆରମ୍ଭ କଲୁ ।

ତହିଁ ପରଦିନଟି ଆମ ଯାତ୍ରା ଭିତରେ ସବୁଠାରୁ ଅଶୁଭଦିନ ଥିଲା । ଦକ୍ଷିଣ ଦିଗକୁ ଯାଇଥିବା ରାସ୍ତା ଖୋଜି ବାହାର କରିବା ପାଇଁ ଆମେ ପର୍ବତ ଉପରୁ ତଳକୁ ଆସିଲୁ । ଉନ୍ମୁକ୍ତ ସନ୍ତସନ୍ତିଆ ପ୍ରାନ୍ତର ଭିତରେ ରାସ୍ତା ପଡ଼ିଥାଏ । ମାତ୍ର ଆତ୍ମଗୋପନ କରିବା ପାଇଁ ସେ ରାସ୍ତାରେ ଗଛ କିମ୍ବା ବଡ଼ ପ୍ରସ୍ତରଖଣ୍ଡ ନଥିଲା । ସମୟସମୟରେ ଆମେ ଲାଲଟୋପିଧାରୀ ସୈନିକମାନଙ୍କୁ ପାହାଡ଼ କଡ଼େ କଡ଼େ ଆମକୁ ଖୋଜୁଥିବାର ଦେଖୁ । ସେପରି ସମୟରେ ସେମାନଙ୍କ ଦୃଷ୍ଟିରେ ନ ପଡ଼ିବା ପାଇଁ ଭୂଇଁରେ ଛାତି ଲଗାଇ କୌଣସି ବୁଦାଧାରରେ ଶୋଇରହୁ । ସେହି ସନ୍ତସନ୍ତିଆ ଭୂଇଁରେ ଅବିଶ୍ରାନ୍ତ ଭାବରେ ଆମେ ଅଗ୍ରସର ହେଉଥାଉ । ମୋତେ ଲାଗିଲା ସତେ ଯେପରି ମୁଁ ଇଚ୍ଛା କଲେ ବି ଆଉ ଅଗ୍ରସର ହୋଇପାରିବି ନାହିଁ; କିନ୍ତୁ ଆଲାନ୍ ମୋତେ ଲଜ୍ଜା ଦେଇ କହିଲେ ମୁଁ ଚାଲିବାପାଇଁ ଅକ୍ଷମ ହେଲେ ସେ ମୋତେ ବୋହି ନେଇଯିବେ । ରାତିଯାକ ଆମେ କଷ୍ଟ ସହି ଅଗ୍ରସର ହେଲୁ । ସକାଳସୁଦ୍ଧା ଆମେ ବିଶେଷ ବିପଜ୍ଜନକ ସ୍ଥାନ ଅତିକ୍ରମ କରିଯାଇଥାଉ । ତା'ପରେ ଆମେ ଟିକିଏ ନିର୍ଭୟରେ ବାଟ ଚାଲିପାରିଲୁ; କିନ୍ତୁ ସେତେବେଳକୁ ବୁଢ଼ାଲୋକଙ୍କ ପରି ଚାଲିଲାବେଳେ ଠିକ୍ ଭାବରେ ପାଦ ପଡୁ ନଥାଏ । ମଲାଲୋକ ପରି ମୁଖମଣ୍ଡଳ ରକ୍ତହୀନ ହୋଇଥାଏ । ପାଦ ଉପରୁ ଦୃଷ୍ଟି ନେଇ ଆମେ କେତେବେଳେ ଉପରକୁ ଚାହିଁପାରୁନଥାଉଁ । ପ୍ରତି ପହଣ୍ଡରେ ପାଦଯୋଡ଼ିକ ଉଠାଇବାବେଳେ ଆମକୁ ଲାଗୁଥାଏ ସତେଯେପରି କେତେ ଓଜନିଆ ଜିନିଷମାନ ଆମେ ଉପରକୁ ଉଠାଉଛୁ । ଆଲାନ୍ ନିଶ୍ଚୟ ମୋ ପରି କ୍ଲାନ୍ତ ହୋଇପଡ଼ିଥିବେ, ତା'ନହେଲେ ସେ କେବେହେଲେ ଧରା ପଡ଼ିନଥାନ୍ତେ ।

ଗୋଟିଏ ପାହାଡ଼ ଧାରେ ଧାରେ ଆମେ ଦିହେଁ ଆଗପଛ ହୋଇ ଓହ୍ଲାଉଥାଉ । ଏପରି ସମୟରେ ହଠାତ୍ ଏକ ବୁଦାଗହଳରୁ ଖସ୍ ଖସ୍ ଶବ୍ଦ ଶୁଣିବାକୁ ପାଇଲୁ ଓ ତିନିଚାରିଜଣ ରୁକ୍ଷମଣିଷ କୁଦାମାରି ବାହାରି ଆସିଲେ । ମୁହୂର୍ତ୍ତକ ମଧ୍ୟରେ ଆମେ

ଉପରକୁ ମୁହଁକରି କଚାଡ଼ି ପଡ଼ିଲୁ । ଆମ ତଣ୍ଟିପାଖରେ ସୁତୀକ୍ଷ୍ଣ ଛୁରିକା ଆମମାନଙ୍କର ଦୃଷ୍ଟି ଆକର୍ଷଣ କଲା ।

ମୁଁ ଏହାକୁ ଖାତିର କଲିନାହିଁ । ମୋ ଚାଲିବା ବନ୍ଦହେବାରୁ ମୁଁ ଏତେ ଖୁସି ହୋଇଗଲି ଯେ, ଆଖି ଆଗରେ ଛୁରିକା ଦେଖି ତିଳେହେଲେ ଅସ୍ଥିର ହେଲିନାହିଁ । ମୁଁ ଉପରକୁ ମୁହଁ କରି ପଡ଼ିରହିଲି । ଶୁଣିଲି, ଆଲାନ୍ ଓ ଅନ୍ୟଜଣେ ଲୋକ ଗେଲକ୍‌ଭାଷାରେ କ'ଣ ଧୀରେ ଧୀରେ କଥାବାର୍ତ୍ତା ହେଉଛନ୍ତି । ସଙ୍ଗେ ସଙ୍ଗେ ସେମାନେ ଆମ ଉପରୁ ଛୁରୀ ଉଠାଇ ନେଲେ ଏବଂ ଆମେ ବୃଦାମୂଳରେ ବସି ରହିଲୁ । ଆଲାନ୍ କହିଲେ, ''ସେମାନେ କ୍ଲାନିଙ୍କର ଲୋକ ଏବଂ ଆମର ମିତ୍ରପକ୍ଷୀୟ । ସେମାନେ ତାଙ୍କ ମାଲିକଙ୍କୁ ଆମର ଖବର ଦେବା ପର୍ଯ୍ୟନ୍ତ ଆମକୁ ଏଠାରେ ଅପେକ୍ଷା କରିବାକୁ ପଡ଼ିବ ।''

ଭାଉରିବ୍ ଦଳର ନେତା କ୍ଲାନି ମେକ୍‌ଫାର୍‌ସନ୍ ୧୭୪୫ ଖ୍ରୀ:ଅ ରେ ଘଟିଥିବା ବଡ଼ ବିଦ୍ରୋହର ନେତାମାନଙ୍କ ମଧ୍ୟରୁ ଜଣେ ଥିଲେ । ମୁଁ ଭାବିଥିଲି ସେ ବହୁପୂର୍ବରୁ ଫ୍ରାନ୍‌ସ ଚାଲିଯାଇଛନ୍ତି । କ୍ଲାନ୍ତିବଶତଃ ମୁଁ ଘୁମାଇ ପଡୁଥିଲି । ଆଲାନ୍‌ଙ୍କ କଥାରେ ବିସ୍ମିତହୋଇ ସଜାଗ ହୋଇଉଠିଲି ।

କହିଲି, ''କ'ଣ କ୍ଲାନି ବର୍ତ୍ତମାନ ସୁଦ୍ଧା ଏହିଠାରେ ଅଛନ୍ତି ?''

ଉତ୍ତରରେ ଆଲାନ୍ କହିଲେ, ''ହଁ, ତାଙ୍କ ଦଳର ଲୋକମାନେ ତାଙ୍କୁ ନିଜ ଦେଶରେ ରଖାଇଛନ୍ତି ।''

ଲିଭି ଆସୁଥିବା ଆଗ୍ରହାଗ୍ନିର ଶେଷ ସ୍ଫୁଲିଙ୍ଗ ମୋ ମନ ଭିତରେ ଜଳିଉଠିବାର ମୁଁ ଅନୁଭବ କଲି । ସୁଦୀର୍ଘ ପଥଯାତ୍ରାଜନିତ କ୍ଲାନ୍ତି ଏବଂ ଧରାପଡ଼ିବାର ଭୟ ମୋ ପକ୍ଷରେ ଅସହ୍ୟ ହୋଇଉଠିଥିଲା । କ୍ଲାନିଙ୍କର ଭୃତ୍ୟମାନେ ସର୍ବଶେଷରେ ମୋତେ ଅନ୍ଧକାର ଉପତ୍ୟକା ଏବଂ ପର୍ବତଗହ୍ୱର ଭିତରେ ନେଇ ଆଲଡ଼ାର୍ ପର୍ବତର ମଧ୍ୟସ୍ଥଳରେ ପହଞ୍ଚାଇଲେ । ସେହିଠାରେ ପାହାଡ଼ ପାର୍ଶ୍ୱରେ ଥିବା ଗୋଟିଏ ଘରେ କ୍ଲାନି ଲୁଚିରହୁଥିଲେ ।

## କଳହ

ଯେଉଁ ବିସ୍ମୟକର ସ୍ଥାନକୁ ଆମକୁ ନିଆଗଲା ଦେଶସାରା ତାହା କ୍ଲାନିଙ୍କର ଗୁମ୍ଫା ନାମରେ ପରିଚିତ । ଡିମ୍ବାକୃତିବିଶିଷ୍ଟ ଏହି ଗୃହଟି ଏକ ଜୀବନ୍ତବୃକ୍ଷକୁ କେନ୍ଦ୍ରକରି ନିର୍ମିତ । ପାହାଡ଼ଧାରରେ ଥାଇ ଘରଟିର ଅର୍ଦ୍ଧେକ ଛିଡ଼ା ହେବାପରି ଏବଂ ଅନ୍ୟ ଅର୍ଦ୍ଧେକ ଝୁଲିବା ପରି ଦେଖାଯାଉଥାଏ । ଏହାର ଭିତରଅଂଶରେ ପାଞ୍ଚଜଣ ଲୋକ ଚଳିବାଭଳି ସ୍ଥାନ ଥାଏ । ପଥରକୁ କାଟି ଗୋଟିଏ ଚୁଲି ତିଆରି କରାଯାଇଥାଏ ।

ଧୂସର ରଙ୍ଗର ଧୂମକୁଣ୍ଡଳୀ ଘର ଉପରକୁ ଉଠି ଧୂସର ରଙ୍ଗର ପାହାଡ଼ ଧାରେ ଧାରେ ଗତି କରୁଥିବା ବେଳେ ଉପତ୍ୟକା ତଳୁ କିଛି ବାରିହୁଏ ନାହିଁ । କ୍ଲାନିଙ୍କର ଲୁଚି ରହିବା ସ୍ଥାନଗୁଡ଼ିକ ମଧ୍ୟରେ ଏହାହିଁ ତାଙ୍କ ପକ୍ଷରେ ସର୍ବାପେକ୍ଷା ଭଲ ସ୍ଥାନ ଥିଲା । ଏହିଠାରେ ସେ ଏତେଦିନ ପର୍ଯ୍ୟନ୍ତ ଲୁଚିରହି ଧରାପଡ଼ିନାହାନ୍ତି ।

ଆମେ ଦରଜା ନିକଟରେ ପହଞ୍ଚିବା ସମୟରେ କ୍ଲାନି ସେଠାରେ ବସି ଗୋଟିଏ ଅପରିଷ୍କାର ପୁରୁଣା ନଳୀଯୋଗେ ଧୂମପାନ କରୁଥିଲେ । ପୋଷାକ ପରିଚ୍ଛଦରେ ଆଡ଼ମ୍ବର ନଥାଏ; ମାତ୍ର ତାଙ୍କର ଚାଲିଚଳନ ରାଜକୀୟ । ଆମ୍ଭମାନଙ୍କୁ ରାଜକୀୟ ରୀତିରେ ସେ ସମ୍ବର୍ଦ୍ଧନା ଜଣାଇ ତାଙ୍କ ଘରକୁ ନେଲେ । ସେହିଘରେ ସେ ପ୍ରିନସ୍ ଚାର୍ଲସ୍‌ଙ୍କର ମଧ୍ୟ ଚର୍ଚ୍ଚା କରିଛନ୍ତି । ସେହି ଘର ଭିତରେ ଥାଇ କ୍ଲାନି ତାଙ୍କ ଦଳକୁ ନିୟନ୍ତ୍ରଣ କରନ୍ତି । ତାଙ୍କ ପ୍ରତି ସେମାନଙ୍କର ଭୟ ଏବଂ ଭକ୍ତି ଅବିଚଳିତ ଥିଲା । ସମଗ୍ର ଦେଶରୁ ତାଙ୍କ ଦଳର ଲୋକମାନେ ପରସ୍ପର ଭିତରେ ଘଟୁଥିବା କଳହର ସମାଧାନ ପାଇଁ ତାଙ୍କ ନିକଟକୁ ଆସୁଥିଲେ । ସେ ତାଙ୍କର ଭୃତ୍ୟମାନଙ୍କୁ ଖୁବ୍ କଠୋର ଆଦେଶ ଦେଉଥିଲେ ଏବଂ ଦଣ୍ଡର ଭୟ ଦେଖାଉଥିଲେ । ଛୋଟ ପିଲାମାନେ ରାଗି ପିତା ଆଗରେ ଯେପରି ଭୟରେ ଥରନ୍ତି ଭୃତ୍ୟମାନେ ତାଙ୍କ ଆଗରେ ସେହିପରି ଥରୁଥିଲେ ।

କ୍ଲାନିଙ୍କ ପାଖରେ ରହିବା ଭିତରେ ମୁଁ ଭୀଷଣ ଅସୁସ୍ଥ ହେଲି । ମା' ରୁଗ୍ଣ ପିଲାର ଯତ୍ନ ନେବାପରି ଆଲାନ୍ ଏବଂ କ୍ଲାନିଙ୍କର ଭୃତ୍ୟମାନେ ମୋର ଯତ୍ନ ନେଉଥିଲେ । ଜ୍ୱର ଛାଡ଼ିଯିବାପରେ ମୁଁ ଅର୍ଦ୍ଧଚେତନ ଅବସ୍ଥାରେ ଥାଇ ମୋ ଚାରିପାଖରେ ଘଟୁଥିବା ଘଟଣା ଦେଖୁଥାଏ । ଅଧିକାଂଶ ସମୟରେ ଆଲାନ୍ ଏବଂ କ୍ଲାନି ଟେବୁଲ ଧାରରେ ବସି ତାସ୍ ଖେଳନ୍ତି ଏବଂ ସେହି ଖେଳରୁ ଉପାର୍ଜିତ ଟଙ୍କା ମୋ ଶଯ୍ୟାପାର୍ଶ୍ୱରେ ଠୁଳକରି ରଖିଥାନ୍ତି । ପ୍ରତିଦିନ ଏହି ଜୁଆଖେଳ ଦେଖିଦେଖି ମୋତେ ବିରକ୍ତ ଲାଗିଲା । ପ୍ରଥମେ ପ୍ରଥମେ ଆଲାନ୍ ଏଥିରେ ଜିଣୁଥିଲାପରି ଜଣାପଡୁଥିଲା; କିନ୍ତୁ ଯେତେବେଳେ ସେ ଅଧିକ ଟଙ୍କା ଋଣକରିବାପାଇଁ ମୋ ନିକଟକୁ ଆସିଲେ ମୁଁ କିଛି ନକହି ସେ ଚାହୁଁଥିବା ଟଙ୍କା ତାଙ୍କୁ ଦେଲି; କିନ୍ତୁ ମୁଁ ଖେଳ ଆଡ଼କୁ ନଚାହିଁ କାନ୍ଥଆଡ଼କୁ ମୁହଁ ଘୂରାଇ ଶୋଇଲି । ନିଜର ସମସ୍ତ ଟଙ୍କା ହରାଇସାରିବ ପରେ କି ମାଦକତା ତାଙ୍କୁ ଖେଳ ନିକଟରେ ବସାଇ ରଖିଥିଲା ମୁଁ ବୁଝିପାରୁନଥାଏ ।

ମୁଁ ସମ୍ପୂର୍ଣ୍ଣ ଭଲ ହେଲାବେଳକୁ ଅନେକ ଦିନ ବିତି ଯାଇଥାଏ । ସେ ସମୟରେ ଏକ ବିଶେଷ ଅଡୁଆ ପରିସ୍ଥିତି ଉପୁଜିଲା । ଯେଉଁ ଟଙ୍କାକଉଡ଼ି ଆଲାନ୍ ଓ ମୁଁ ଆମ୍ଭମାନଙ୍କର ଯାତ୍ରାକାଳୀନ ଖର୍ଚ୍ଚ ନିମନ୍ତେ ରଖିଥିଲୁ ସବୁ ଶେଷ ହୋଇଯାଇଥିଲା । ମୋତେ ଏକଥା କହିଲାବେଳେ ଆଲାନ୍ ମୋ ମୁହଁକୁ ଚାହିଁପାରିନଥିଲେ ।

ଆମେ ବନ୍ଧୁଭାବରେ କ୍ଲାନିଙ୍କଠାରୁ ବିଦାୟ ନେଲୁ; କିନ୍ତୁ ଆଲାନ୍ ଓ ମୋ ମଧ୍ୟରେ କଳହ ଉପୁଜିଲା । ଆମେ ସାଙ୍ଗହୋଇ ଯାତ୍ରା କରୁଥିବା ସମୟରେ କେହି କାହାରି

ସହିତ କଥା କହୁ ନଥାଉ । ମୁଁ ରାଗିଯାଇଥାଏ ଓ ଆଲାନ୍ ମନେମନେ ଲଜ୍ଜିତ ହୋଇଥାନ୍ତି । ମୁଁ ଯେତେବେଳେ ଅତିଶୟ ଅସୁସ୍ଥ ଥାଇ କେତେବେଳେ କଅଣ କରୁଛି ଜାଣିପାରୁ ନଥାଏ, ସେହିପରି ସମୟରେ ସେ ମୋଠାରୁ ଟଙ୍କା ମାଗିନେଲେ ଏବଂ ଖେଳରେ ସବୁଟଙ୍କା ହାରିଲା ପରେ ମଧ୍ୟ ମୋତେ କିଛି କହିଲେ ନାହିଁ । ତାଙ୍କୁ ସେଠାରେ ଛାଡ଼ି ଅନ୍ୟ ରାସ୍ତା ଧରି ଚାଲିଯିବା ପାଇଁ ବେଳେବେଳେ ଇଚ୍ଛା ହେଉଥାଏ; କିନ୍ତୁ ଯେଉଁ ବନ୍ଧୁଙ୍କର ମୋ ପ୍ରତି ପ୍ରକୃତ ସ୍ନେହ ଥିବାର ମୁଁ ଅନୁଭବ କରୁଛି, ତାଙ୍କୁ କିପରି କହିବି ଯେ, ତାଙ୍କର ବନ୍ଧୁତା ମୋ ପକ୍ଷରେ ଏକ ବୋଝ ହୋଇଛି ବୋଲି । ତଥାପି ଏଡ଼େ ନିବିଡ଼ ବନ୍ଧୁତା ଥିଲେ ବି ମୋର ତାଙ୍କ ଉପରେ କ୍ରୋଧ ଜାତହେଲା ।

ଅଧିକ ସମୟ ପାଇଁ ନୀରବତା ସହ୍ୟ କରି ନପାରି ଆଲାନ୍ ମୋ ପାଖକୁ ଲାଗିଆସିଲେ । କହିଲେ, ''ଦେଖ ଡେଭିଡ୍, ଦୁଇବନ୍ଧୁଙ୍କ ମଧ୍ୟରେ ଏ ପ୍ରକାର ଆଚରଣ କେବେହେଲେ ସୁନ୍ଦର ନୁହେଁ । ମୁଁ ବାସ୍ତବିକ ଏଥିପାଇଁ ଦୁଃଖିତ । ତୁମର କିଛି କହିବାର ଅଛି ?''

ମୁଁ କହିଲି, ''ନା ।''

ଥରିଲା କଣ୍ଠରେ ସେ କହିଲେ, ''ନା ? ମୁଁ ଯଦି ନିଜକୁ ଦୋଷୀ ବୋଲି ସ୍ୱୀକାର କରେ, ତା'ହେଲେ ବି ତୁମେ କିଛି କହିବ ନାହିଁ ?''

ଅନୁଚ୍ଚ ସ୍ୱରରେ କହିଲି, ''ତୁମେ ଅବଶ୍ୟ ପ୍ରକୃତରେ ଦୋଷୀ ଆଉ ତୁମେ ଏକଥା ନିଶ୍ଚୟ ସ୍ୱୀକାର କରିବ ଯେ, ମୁଁ ପ୍ରଥମେ ତୁମ ଉପରେ ଦୋଷାରୋପ କରିନାହିଁ ।''

ସେ କହିଲେ, ''ତୁମେ ଯାହା କହୁଛ ସେ କଥା ଠିକ୍‌ବୋଲି ମୁଁ ମାନୁଛି । ମାତ୍ର ତୁମର ଜାଣିବା ଉଚିତ ଯେ, ତୁମର ନୀରବତା ମୋତେ ଖୁବ୍ ଆଘାତ ଦେଇଛି ।'' ତା'ପରେ ଦିନସାରା ଆମେ ଚାଲିଲୁ, ରାତିରେ ଭୋଜନ କଲୁ ଏବଂ ଶୋଇଲୁ, ତଥାପି କେହି କାହାକୁ ପଦେହେଲେ କଥା କହିଲୁ ନାହିଁ । ଏହିପରି ଭାବରେ ଆମେ ତିନିଦିନ ବିତାଇଲୁ । ଝଡ଼ବତାସ ଭିତରେ ଅନବରତ ଓଦାହୋଇ ଆମମାନଙ୍କୁ କେତେ ଅଜଣା ପର୍ବତ ଉପରଦେଇ ଚାଲିଯିବାକୁ ପଡୁଥାଏ । ଏହି ସମୟ ଭିତରେ ସୁଦ୍ଧା ଆମେ ଦୁହେଁ ପରସ୍ପର ମଧ୍ୟରେ ପ୍ରାୟ କଥାବାର୍ତ୍ତା କରୁନଥାଉ । ପ୍ରକୃତ କଥା କହିବାକୁ ଗଲେ ମୁଁ ସେତେବେଳକୁ ମୃତବତ୍ ହୋଇପଡ଼ିଥାଏ । ମୁଁ ସ୍ୱଭାବତଃ ଖୁବ୍ ଅଳ୍ପ ରାଗୁଥିଲି; କିନ୍ତୁ ଥରେ କାହାରି ଉପରେ ରାଗିଲେ ତାକୁ ସହଜରେ କ୍ଷମା ଦେଇ ପାରୁ ନଥିଲି । ବର୍ତ୍ତମାନ ମୁଁ କେବଳ ଯେ ମୋ ବନ୍ଧୁଙ୍କ ଉପରେ ରାଗିଥିଲି ତାହା ନୁହେଁ, ମୋ ନିଜ ଉପରେ ମଧ୍ୟ ମୋର ବିରକ୍ତି ଆସିଥିଲା । ଦୁଇଦିନ ଧରି ଆଲାନ୍ ସବୁବେଳେ ମୋ ପ୍ରତି ଦୟା ଦେଖାଇ ଆସୁଥାନ୍ତି । ନିଜେ ନୀରବ ରହୁଥିଲେ ମଧ୍ୟ ସବୁବେଳେ ମୋତେ ସାହାଯ୍ୟ କରିବାପାଇଁ ସେ ପ୍ରସ୍ତୁତ ଥାଆନ୍ତି ଏବଂ ମୋ ମନରୁ କିପରି କ୍ରୋଧ ଘୁଞ୍ଚିଯିବ ମନେ ମନେ ସେହି ଆଶା କରୁଥାନ୍ତି; କିନ୍ତୁ ମୁଁ ତାଙ୍କର

ସମସ୍ତ ସାହାଯ୍ୟକୁ ଉପେକ୍ଷା କରୁଥାଏ । ଶେଷରେ ଆଲାନ୍ ଆଉ ମୋତେ ସାହାଯ୍ୟ କରିବାକୁ ଚେଷ୍ଟା କଲେ ନାହିଁ । ତାହା ପରିବର୍ତ୍ତେ ମୁଁ ଜଣେ ହୁଇଗ୍ ଏବଂ ନିମ୍ନାଞ୍ଚଳବାସୀ ବୋଲି ମୋତେ ବିଦ୍ରୂପ କରି ବିରକ୍ତ କରିବାକୁ ଲାଗିଲେ ।

ମୋତେ ଅଧିକରୁ ଅଧିକ ଖରାପ ଲାଗୁଥାଏ । ମୋ ପଞ୍ଜରା କଡ଼ରେ ଦୁର୍ବିଷହ ବ୍ୟଥା ଅନୁଭବ କରୁଥାଏ । ମୋତେ ଲାଗିଲା ଯେପରି ଅଳ୍ପ ସମୟ ଭିତରେ ମୋର ପ୍ରାଣବାୟୁ ଉଡ଼ିଯିବ । ଜୀବନର ଶେଷ ସମୟରେ ଆଲାନ୍‌ଙ୍କ ଉପରେ ଆଉ ରାଗିବି ନାହିଁ ବୋଲି ସ୍ଥିର କଲି । ସେ ପୁଣି ଥରେ ମୋତେ ହୁଇଗ୍ ବୋଲି ବିଦ୍ରୂପ କଲେ । ମୁଁ ଛିଡ଼ାହେଲି ଓ ଥରିଲାଗଲାରେ କହିଲି, ''ମିଃ ଷ୍ଟିଓ୍ୱାର୍ଟ, ତୁମେ ମୋ ଠାରୁ ବୟସରେ ବଡ଼ । ତେଣୁ ମୋ ସହିତ ତୁମର କିପରି ବ୍ୟବହାର କରିବାର କଥା ଏହା ଜାଣିବା ଉଚିତ । ତୁମେ କେମ୍ପବେଲ୍ ଏବଂ ହୁଇଗ୍‌ମାନଙ୍କୁ ଡରି ଯୁଦ୍ଧଭୂମିରୁ ପଳାୟନ କରିଛ । ସେହି ହିସାବରେ ସେମାନେ ଯେ ତୁମଠାରୁ ବଡ଼ ଏହା ତୁମ ପକ୍ଷରେ ସ୍ୱୀକାର କରିବାର କଥା ।''

ଆଲାନ୍ ଛିଡ଼ା ହୋଇଯାଇ ମୋତେ କହିଲେ, ''ତୁମେ ଶେଷରେ ମୋତେ ଭୀରୁ ବୋଲି କହିପାରିଲ ? ଜୀବନରେ ଏହିପରି ଅନେକ କଥା ଭୁଲି ହେବ ନାହିଁ ।''

ମୁଁ କହିଲି, ''ତୁମେ ଏହା ଭୁଲିଯିବ ବୋଲି ମୁଁ କହି ନଥିଲି । ମୁଁ ତୁମପରି ଗର୍ବୀ ନୁହେଁ । ଆସ, ମୁଁ ପ୍ରସ୍ତୁତ ଅଛି ।'' ଏହା କହି ମୁଁ ମୋର ତରବାରି ବାହାର କରି ଧରିଲି, ଠିକ୍ ଯେଉଁଭଳି ଧରିବା ପାଇଁ ଆଲାନ୍ ମୋତେ ଶିକ୍ଷା ଦେଇଥିଲେ । ସେ ପାଟିକରି କହିଲେ, ''ଡେଭିଡ୍, ତୁମେ କ'ଣ ପାଗଳ ହେଲ ? ମୁଁ କିପରି ତୁମ ସହିତ ଯୁଦ୍ଧ କରିବି ! ତୁମ ସହିତ ଯୁଦ୍ଧ କରିବା ଅର୍ଥ ନରହତ୍ୟା କରିବା ହେବ ନାହିଁ କି ?'' କହିଲି, ''ମୋତେ ଅପମାନିତ କରିବା ପୂର୍ବରୁ ତୁମର ଏ କଥା ଭାବିବାର ଥିଲା ।'' ସେ ବିବ୍ରତହୋଇ କିଛି ସମୟ ପାଇଁ ଠିଆହୋଇ ରହିଲେ । ଶେଷରେ କହିଲେ, ''ଏହା ସତକଥା ।'' ତା'ପରେ ସେ ତାଙ୍କର ତରବାରି କାଢ଼ିଲେ; କିନ୍ତୁ ତରବାରି ଦୁଇଟି ସଂଯୋଗ ହେବା ପୂର୍ବରୁ ସେ ତାଙ୍କ ହାତରେ ଥିବା ତରବାରିଟିକୁ ହଠାତ୍ ଫିଙ୍ଗିଦେଲେ ଏବଂ କହିଲେ, ''ନା ନା, ଏହା ହୋଇ ପାରେ ନା ।''

ତାଙ୍କର ଏତାଦୃଶ ବ୍ୟବହାରରେ ମୋ ମନରୁ କ୍ରୋଧାଗ୍ନି ସମ୍ପୂର୍ଣ୍ଣ ଭାବରେ ନିର୍ବାପିତ ହେଲା । ମୁଁ କହିଦେଇଥିବା କଥା ପାଇଁ ଅନୁତାପ କଲି; କିନ୍ତୁ ମୁହଁରୁ ଥରେ କଥା ବାହାରିଗଲେ ତାକୁ କେହି କ'ଣ କେବେ ଫେରାଇ ଆଣିପାରେ ? ମୁଁ ତାଙ୍କୁ ଯେଉଁ କଥା କହିଛି ତା'ପାଇଁ ଯେ କ୍ଷମା ନାହିଁ ତାହା ମୁଁ ସ୍ପଷ୍ଟଭାବେ ଅନୁଭବ କଲି । ମନେମନେ ଭାବିଲି, କୌଣସି ପ୍ରକାର ସାହାଯ୍ୟ କରିବା ପାଇଁ ମୁଁ ଯେବେ ଡାକ ପକାଏ ତା'ହେଲେ ଆଲାନ୍ ମୋ ପାଖକୁ ଆସିବେ । ମୋ ମନର ଗର୍ବ କୁଆଡ଼େ ଅନ୍ତର୍ହିତ ହେଲା । କହିଲି, ''ଆଲାନ୍, ତୁମେ ଯଦି ମୋତେ ସାହାଯ୍ୟ ନକର ତା'ହେଲେ ମୁଁ ନିଶ୍ଚୟ ଏଠାରେ ମରିଯିବି ।'' ସେ ସିଧା ଭାବରେ ବସି ମୋ

ଆଡ଼େ ଚାହିଁଲେ । ମୁଁ ପୁଣି କହିଲି, ''ଚାହୁଁଛ କ'ଣ ? ମୁଁ ନିଶ୍ଚୟ ମରିଯିବି । ମୋତେ ଗୋଟିଏ ଘରକୁ ନେଇଚାଲ । ତା'ହେଲେ ଅନ୍ତତଃ ମରିବା ପୂର୍ବରୁ ମୁଁ ଟିକିଏ ଶାନ୍ତିରେ ଆଖି ବୁଜିବି ।'' ମୁଁ କାନ୍ଦି କାନ୍ଦି ତାଙ୍କୁ ଏ କଥା କହୁଥାଏ । ମୋ ସ୍ୱର ଶୁଣିଲେ ପଥର ବି ତରଳିଯିବ । ତାଙ୍କୁ କହିଲି, ''ମୋ ପଞ୍ଜରା କଡ଼ରେ ମୁଁ ତାତିଲା ଲୁହା ଗେଞ୍ଜିଦେବା ପରି କଷ୍ଟ ଅନୁଭବ କରୁଛି । ନିଃଶ୍ୱାସ ନେବାରେ ମୋର ଭୀଷଣ କଷ୍ଟହେଉଛି । ମୁଁ ଯଦି ମରିଯାଏ ଆଲାନ୍, ତୁମେ ମୋତେ କ୍ଷମା ଦେବ ।''

ଆଲାନ୍ କହିଲେ, ''ଚୁପ୍‌କର, ଚୁପ୍‌କର, ସେ କଥା କୁହନାହିଁ । ମୋ ଉପରକୁ ଆଉଜି ଆସ, ତା'ହେଲେ ମୁଁ ମୋର ବାହୁର ବେଷ୍ଟନୀ ମଧ୍ୟରେ ତୁମକୁ ଧରି ରଖିପାରିବି । ନିକଟରେ ମୋର ଗୋଟିଏ ବନ୍ଧୁଙ୍କର ଘର ପଡ଼ିବ । ଜାଣିଲ ଡେଭିଡ୍, ଏହା ପୂର୍ବରୁ ତୁମ ସହିତ କଥା କହିବାବେଳେ ମୋର ଜ୍ଞାନ ନଥିଲା ବା ଦୟା ନଥିଲା । ତୁମେ ଯେ ଜଣେ ପିଲା ଏକଥା ମୁଁ ଭୁଲିଯାଇଥିଲି । ଏଥିପାଇଁ ତୁମେ ମୋତେ କ୍ଷମାକର ।'' କଥା କହିବାବେଳେ ତାଙ୍କ ଆଖିରେ ଲୁହ ଜକେଇ ଆସୁଥାଏ । ପାଟିକରି କହିଲି, ''ଆଲାନ୍, ସେ କଥା ଆଉ କୁହ ନାହିଁ । ଓଃ, ମୋର ଯନ୍ତ୍ରଣା କ୍ରମେ ବଢ଼ି ଯାଉଛି । ପାଖରେ କ'ଣ ଘର ନାହିଁ ?'' ସେ ସାହସର ସହିତ କହିଲେ, ''ମୁଁ ତୁମପାଇଁ ଘରଟିଏ ଦେଖିଛି ଡେଭିଡ୍ !'' ସେ ମୋଠାରୁ ଉଚ୍ଚତାରେ ଏକଫୁଟ କମ୍ ହେଲେ ମଧ୍ୟ ମୋତେ କାନ୍ଧରେ ବସାଇ ନେଇଯିବା ପାଇଁ ପ୍ରସ୍ତୁତ ହେଲେ ।

## ପଳାୟନର ଶେଷ

ଆମେ ପ୍ରଥମେ ଯେଉଁ ଘରେ ପହଞ୍ଚିଲୁ ଆଲାନ୍ ତାହାର ଦରଜାରେ ଆଘାତ କଲେ । ସେଠାରେ ସେପରି ଡାକିବା ଖୁବ୍ ନିରାପଦ ନଥିଲା । ପାର୍ବତ୍ୟ ଅଞ୍ଚଳର ସେହି ଅଂଶରେ ବିଭିନ୍ନ ଦଳର ଲୋକମାନେ ବାସକରୁଥିଲେ । ସେମାନଙ୍କ ମଧ୍ୟରୁ କେତେକ ଷ୍ଟିଓ୍ୱାର୍ଟମାନଙ୍କର ବନ୍ଧୁ । ପୁଣି ଆଉ କେତେକ ସେମାନଙ୍କର ବନ୍ଧୁ ନୁହନ୍ତି । ସୌଭାଗ୍ୟକୁ ଆମେ ଯେଉଁ ଘରେ ପ୍ରଥମେ ପହଞ୍ଚିଲୁ ତାହା ଆଲାନଙ୍କର ଜଣେ ମିତ୍ରପକ୍ଷୀୟ ଲୋକଙ୍କର ଘର । ସେ ଆଲାନ୍‌ଙ୍କୁ ଆଗରୁ ଜାଣିଥିଲେ ଏବଂ ତାଙ୍କୁ ଆଦରରେ ଘର ଭିତରକୁ ପାଛୋଟି ନେଲେ ।

ସେଠାରେ ସଙ୍ଗେ ସଙ୍ଗେ ମୋତେ ଗୋଟିଏ ବିଛଣାରେ ଶୁଆଇ ଦିଆଗଲା । ତପ୍ରେ ଜଣେ ଭଲ ଡାକ୍ତରଙ୍କୁ ଅଣାଗଲା ମୋତେ ଦେଖିବା ପାଇଁ । ମୁଁ ଗୋଟିଏ ସପ୍ତାହପାଇଁ ବିଛଣାରେ ପଡ଼ିରହିଲି । ଏହି ସମୟ ଭିତରେ ଆଲାନ୍ ମୋତେ ଛାଡ଼ି କୁଆଡ଼େ ଯାଇନାହାନ୍ତି । ନଜର ନିରାପତ୍ତା ପାଇଁ ତାଙ୍କୁ ଛାଡ଼ି ଚାଲିଯିବାକୁ କହିଲେ ହେଁ ସେ ତାହା ଶୁଣିନାହାନ୍ତି । ଦିନବେଳେ ସେ ନିକଟସ୍ଥ ବଣ ଭିତରେ ଲୁଚି ରହନ୍ତି

ଏବଂ ରାତିରେ ମୋତେ ଦେଖିବା ପାଇଁ ଆସନ୍ତି । ଅବଶ୍ୟ ମୁଁ ତାଙ୍କୁ ଦେଖିଲେ ଖୁବ୍ ଖୁସି ହୁଏ ।

ଥରେ କିମ୍ବା ଦୁଇଥର ସୈନ୍ୟମାନେ ଆମେ ଲୁଚିଥିବା ସ୍ଥାନ ନିକଟକୁ ଆସିଛନ୍ତି, କିନ୍ତୁ ମୋତେ କେହି କେବେହେଲେ କିଛି ପ୍ରଶ୍ନ କରିନାହାନ୍ତି । ତଥାପି ମୁଁ ସେ ସ୍ଥାନ ଛାଡ଼ିବା ପୂର୍ବରୁ ଜାଣିଲି ଯେ, ମୁଁ ସେଠାରେ ମେକ୍‌ଲାରେନ୍‌ସମାନଙ୍କ ସାଙ୍ଗରେ ରହୁଥିଲି । ସେହି ଘରକୁ ଲୋକମାନେ ଆସୁଥିଲେ । ତେଣୁ ସେଠାରେ ଆମର ରହିବା ଖବର ଖୁବ୍ ଶୀଘ୍ର ଚାରିଆଡ଼େ ବ୍ୟାପିଗଲା । ଆଲାନ୍ ଓ ମୋତେ ଧରିନେଲେ ପୁରସ୍କାର ମିଳିବାର ନୋଟିସ୍ ସର୍ବତ୍ର ଜାରି ହୋଇଥାଏ । ମୁଁ ଶୋଇଥିବା କୋଠରିରେ ମଧ୍ୟ ସେହିଭଳି ଗୋଟିଏ ନୋଟିସ୍ ପଡ଼ିଥିବାର ଦେଖିଲି । ସୈନ୍ୟମାନଙ୍କୁ ମୋ ବିଷୟରେ ପଦେକଥା କହିଦେଲେ ପ୍ରଚୁର ଅର୍ଥ ମିଳିବାର ସୁବିଧା ଥିଲେ ହେଁ ସେହି ଲୋକମାନଙ୍କ ମଧ୍ୟରୁ ଜଣେ କେହି ମୋ ସହିତ ପ୍ରତାରଣା କରି ନଥିଲେ । ପାର୍ବତ୍ୟ ଅଞ୍ଚଳରେ ରହୁଥିବା ମେକ୍‌ଲାରେନ୍‌ସମାନଙ୍କର ଏଇ ବିଶିଷ୍ଟ ଗୁଣ ଥିଲା ଯେ, ସେମାନେ ଗୁପ୍ତକଥାକୁ ଶହଶହ ବର୍ଷ ଧରି ଲୁଚାଇ ପାରୁଥିଲେ ।

ଶରତକାଳର ଉଷ୍ମତା ଦେହକୁ ପ୍ରୀତିକର ବୋଧହେଲା । ମୁଁ ଯାତ୍ରା କରିବାକୁ ଅନୁମତି ପାଇଲି । ସେତେବେଳକୁ ଆମ୍ଭମାନଙ୍କଠାରେ ଖୁବ୍ ଅଳ୍ପ ଟଙ୍କା ଥାଏ । ତେଣୁ ମୋର ଭୟହେଲା ଯେ ଆମ୍ଭେମାନେ ଯଦି ଖୁବ୍ ଶୀଘ୍ର ଓକିଲ ରେଙ୍କିଲୋର୍‌ଙ୍କଠାରେ ନ ପହଞ୍ଚୁ ତେବେ ଖାଦ୍ୟାଭାବ ଯୋଗୁଁ ବହୁତ କଷ୍ଟ ସହିବାକୁ ପଡ଼ିବ । ସେଠାରେ ପହଞ୍ଚିଲେ ମୁଁ ମୋର ପୈତୃକସମ୍ପତ୍ତି ପାଇଁ ଦାବି କରିପାରନ୍ତି । ଆମ ଆଗରେ ଫୋର୍ଥ ନଦୀ ଦେଖାଗଲା । ଏହି ନଦୀ ପାରିହେଲେ ନିମ୍ନାଞ୍ଚଳ ଆରମ୍ଭ ହେବ । ଏହି ନଦୀ ଉପଦଦେଇ ପ୍ରଧାନ ରାସ୍ତାରେ ଯିବାକୁ ହେଲେ ଷ୍ଟାର୍‌ଲିଂ ନାମକ ପୋଲ ଅତିକ୍ରମ କରିବାକୁ ପଡ଼ିବ । ଏହି ପୋଲଉପରେ ଆଗରୁ ବହୁତ ବଡ଼ ବଡ଼ ଯୁଦ୍ଧ ହୋଇଯାଇଛି । ଆମେ ପ୍ରଥମେ ଯାଇ ସେହିଠାରେ ପହଞ୍ଚିଲୁ । ସେତେବେଳକୁ ଆମ ଉଦ୍ଦେଶ୍ୟରେ ହେଉଥିବା ଅନ୍ୱେଷଣ ଖୁବ୍ ସମ୍ଭବ ବନ୍ଦ ହୋଇଯାଇଥିବ ବୋଲି ଆମର ଆଶା ହେଲା । ରାତିରେ ପୋଲ ନିକଟରେ ଆମେ ବିଶ୍ରାମ ନେଉଥାଉ । ଦେଖିଲୁ ଜଗୁଆଳମାନେ ତଥାପି ଆମକୁ ଖୋଜିବାରେ ଲାଗିଛନ୍ତି ଏବଂ ଜାଣିଲୁ ଯେ, ସେ ରାସ୍ତା ଦେଇ ଆମ୍ଭମାନଙ୍କ ପକ୍ଷରେ ଯିବା ସମ୍ଭବ ନୁହେଁ । ତେଣୁ ଫୋର୍ଥ ନଦୀର ମୁହାଣ ନିକଟକୁ ଯାଇ ଡଙ୍ଗାରେ ନଦୀ ପାରହେବାକୁ ଆଲାନ୍ ସ୍ଥିର କଲେ ।

ମୁଁ କହିଲି, ''ଡଙ୍ଗାରେ ପାରିହେବାପାଇଁ ଟଙ୍କା ଦରକାର । କିନ୍ତୁ ମୋ ପାଖରେ ଯେ ଆଦୌ ପଇସା ନାହିଁ !'' ସେଠାରେ ପହଞ୍ଚିଲେ ଅବସ୍ଥା ଦେଖି ବ୍ୟବସ୍ଥା କରିବାକୁ ହେବ କହି ଆଲାନ୍ ମୋର କଥାକୁ କାଟିଦେଲେ । ତେଣୁ ସାରା ରାତି ଆମେ ଚାଲିବାରେ ଲାଗିଲୁ । ଠିକ୍ ସକାଳେ ଆମେ ଲାଇନକିନ୍ ନାମକ ଏକ କ୍ଷୁଦ୍ର ଗ୍ରାମରେ

ପହଞ୍ଚିଲୁ । ମୁଁ ସେଠାରେ ବସ ନଦୀ ଆରପାଖରେ ଥିବା କୁଇନ୍‌ସଫେରି ସହରଆଡ଼କୁ ଚାହିଁଥାଏ । ମୁଁ ଜାଣିଥିଲି ଯେ, ସେଠାରେ ମି: ରେଙ୍କିଲୋର୍‌ଙ୍କ ଘର ଏବଂ ସେଠାରେ ପହଞ୍ଚିଲେ ମୁଁ ଯଥେଷ୍ଟ ଧନ ପାଇପାରିବି; କିନ୍ତୁ ବର୍ତ୍ତମାନ ମୁଁ ନଦୀର ଏ ପାଖରେ ରହିଛି । ମୋର ପୋଷାକପତ୍ର ବିପର୍ଯ୍ୟସ୍ତ । ପକେଟରେ ମାତ୍ର ତିନି ଶିଲିଂ ମୁଦ୍ରା । ଲାଲକୋଟଧାରୀ ସୈନିକମାନେ ମୋର ଅନ୍ୱେଷଣରେ ଅଦ୍ୟାବଧି ଇତସ୍ତତଃ ଧାବିତ ଏବଂ ମୋ ସଙ୍ଗରେ ଥିବା ମୋର ବନ୍ଧୁଜଣକ ତାଙ୍କ ଦେଶର ଜଣେ ଆଇନ୍ ଅମାନ୍ୟକାରୀ ନାଗରିକ ।

ମୁଁ ପାଟିକରି କହିଲି, ''ଆଲାନ୍, ତୁମେ ମୋ କଥା ଟିକେ ଭାବ । ପକ୍ଷୀମାନେ ଏ ନଦୀ ପାରହୋଇ ପାରିବେ; ଡଙ୍ଗା ଏ ନଦୀ ପାରି ହୋଇପାରିବ । ମୋ ବ୍ୟତୀତ ସମସ୍ତେ ଏ ନଦୀ ପାରି ହୋଇ ପାରିବେ; କିନ୍ତୁ ମୁଁ ପାରିବି ନାହିଁ । ମୁଁ ଯେ ଅତ୍ୟନ୍ତ କ୍ଳାନ୍ତ । ମୋର ହୃଦୟ ବିଦୀର୍ଣ୍ଣ ହୋଇଯିବା ପରି ଲାଗୁଛି ।''

ଆଲାନ୍ କ'ଣ ଚିନ୍ତା କରୁଥିଲେ । ଆମେ ଗୋଟିଏ ଛୋଟ ଟିଣରେ କିଛି ରୁଟି ଓ ଛେନା କରି ଆଣିଥିଲୁ । ଯେଉଁ ଝିଅଟି ଆମକୁ ପରଷି ଦେଉଥିଲା ତାକୁ ମୁଁ ଦେଖିଛି କି ନାହିଁ ବୋଲି ସେ ମୋତେ ପଚାରିଲେ । ମୁଁ ତାକୁ ପ୍ରକୃତରେ ଦେଖିଥିଲି । କାରଣ ସେ ଦେଖିବାକୁ ଅତ୍ୟନ୍ତ ସୁନ୍ଦରୀ ଥିଲା ।

ଆଲାନ୍ କହିଲେ, ''ତା'ହେଲେ ଦେଖ ଡେଭିଡ୍, ମୁଁ ଗୋଟିଏ କଥା ଭାବୁଛି । ତୁମେ ତ ଦେଖିବାକୁ ସୁନ୍ଦର । ଆଖିରେ ତୁମର ବୁଭୁକ୍ଷାର ଚିହ୍ନ ରହିଛି । ଏହା ଆମ୍ଭମାନଙ୍କୁ ଖୁବ୍ ସାହାଯ୍ୟ କରିବ । ମୁଁ ଚାହୁଁଛି, ସେ ଝିଅଟି ତୁମକୁ ଦେଖିବା ପରେ ଯେପରି ଦୁଃଖ ଅନୁଭବ କରିବ । ଆସ, ବର୍ତ୍ତମାନ ଆମେ ସେହି ପାନ୍ଥଶାଳାକୁ ଫେରିଯିବା । ମୁଁ ଭାବୁଛି ସେହିଠାରେ ନଦୀ ପାରି ହେବାପାଇଁ ଡଙ୍ଗାଟିଏ ଯୋଗାଡ଼ କରାଯାଇ ପାରିବ ।'' ସେହି ଗ୍ରାମରେ ପହଞ୍ଚିବା ପର୍ଯ୍ୟନ୍ତ ଆଲାନ୍ ତାଙ୍କ ହାତଦୁଇଟି ଉପରେ ମୋତେ ଶୁଆଇ ବୋହି ନେଉଥାନ୍ତି, ସତେ ଯେପରି ମୁଁ ଅର୍ଦ୍ଧମୃତ । ମୋତେ ସେତେବେଳେ ହସମାଡୁଥାଏ । ମୁଁ ଜାଣିଥିଲି ଯେ, ଆମ ପକ୍ଷରେ ଏହା ଏକ ଜୀବନମରଣ ସମସ୍ୟା । ପାନ୍ଥଶାଳାରେ ପହଞ୍ଚି ଆମେ ଯେଉଁ ଝିଅଟି ପାଖକୁ ଯାଇଥିଲୁ ତାକୁ ପାଇଲୁ । ସେ ପ୍ରକୃତରେ ଖୁବ୍ ଦୟାଶୀଳା ଥିଲା । ମୁଁ ଗୋଟିଏ ଚୌକିରେ ବସିଲି । ଖୁବ୍ ରୁଗ୍‌ଣ ଭଳି ଦେଖାଯାଉଥାଏ । ସେ ମୋତେ ଦେଖି ହାତରେ କିଛି ଖାଦ୍ୟ ଓ ବ୍ରାଣ୍ଡି ଧରି ବାହାରକୁ ଦୌଡ଼ିଆସିଲା । ତା' ଆଖିରେ ଲୋତକ ପୂରିରହିଥାଏ । ଆଲାନ୍‌କୁ ପଚାରିଲେ, ''ତାଙ୍କର କେହି କ'ଣ ବନ୍ଧୁ ନାହାନ୍ତି ?'' ଉତ୍ତରରେ ଆଲାନ୍ କହିଲେ, ''ପ୍ରକୃତରେ ତାଙ୍କର ବହୁତ ବନ୍ଧୁ ଅଛନ୍ତି, କିନ୍ତୁ ସେମାନଙ୍କ ନିକଟକୁ ବର୍ତ୍ତମାନ ଯିବା ଆମ୍ଭପକ୍ଷରେ କଷ୍ଟକର ହେଉଛି ।''

ଝିଅଟି କାରଣ ପଚାରିବାରୁ ଆଲାନ୍ କହିଲେ, ''ମୁଁ ତୁମକୁ ସେ କଥା କହିବା ନିରାପଦ ମନେକରୁନାହିଁ; କିନ୍ତୁ ମୁଁ ତୁମକୁ ଗୋଟିଏ ଗୀତ ଶୁଣାଇବି ।'' ଏହାପରେ

ସେ ଶିଟିମାରି ଗୋଟିଏ ସଙ୍ଗୀତର ସ୍ୱର ତୋଳିଲେ । ପ୍ରତ୍ୟେକ ସ୍କଟଲାଣ୍ଡୀୟ ଏହି ସ୍ୱର ସହିତ ପରିଚିତ । ଏହା ଆଇନଅମାନ୍ୟକାରୀ ଜେକୋବାଇଟ୍‌ମାନଙ୍କ ସଙ୍ଗୀତର ଏକ ସ୍ୱର । ସେ ଝରକାଆଡ଼କୁ ଚାହିଁ ମୋତେ ଚୁପ୍ ହେବାପାଇଁ ନିର୍ଦ୍ଦେଶ ଦେଲା । ମୋତେ ଦେଖାଇ ଆଲାନ୍‌ଙ୍କୁ କହିଲା, ''ତାଙ୍କର ବୟସ ବେଶି ନୁହେଁ ।'' ତାର କଥା ଶୁଣି ଆଲାନ୍ କହିଲେ, ''ଫାଶୀଦଣ୍ଡ ପାଇବା ଭଳି ବୟସ ତାଙ୍କର ହୋଇଯାଇଛି ।'' ତାଙ୍କ କଥା ଶୁଣି ଝିଅଟି କୋଠରି ବାହାରକୁ ଚାଲିଗଲା । ଆଲାନ୍ ମୋତେ ଜେକୋବାଇଟ୍ ବୋଲି ପରିଚିତ କରାଇ ଦେଇଥିବାରୁ ମୁଁ ବଡ଼ ରାଗିଗଲି; କିନ୍ତୁ ଆଲାନ୍ ଠିକ୍ କାମ କରିଥିଲେ । କାରଣ ଆମେ ଯେଉଁଭଳି ଦୁରବସ୍ଥାରେ ପଡ଼ିଥିଲୁ ସେତେବେଳେ ଏହିପରି ପ୍ରତାରଣାର ଆଶ୍ରୟ ନେଇ ନଥିଲେ ଉଦ୍ଧାର ପାଇପାରି ନଥାନ୍ତୁ । କିଛି ସମୟ ପରେ ଝିଅଟି ଅଧିକ ଖାଦ୍ୟ ଧରି ଫେରିଆସିଲା । ତା'ର ବାପା ସେତେବେଳେ ସେଠାରେ ନଥିବାରୁ ସେ ଆମ୍ଭମାନଙ୍କୁ ଖାଦ୍ୟ ନିମନ୍ତେ ପଇସା ଦେବାକୁ ମନାକଲା । ସେତେବେଳେ ମୁଁ ତା'ର ମନର ଅସ୍ଥିରତା ଲକ୍ଷ୍ୟ କରୁଥାଏ ।

ମୁଁ ପଚାରିଲି, ''ତୁମେ କୁଇନ୍‌ସଫେରିରେ ଥିବା ମି. ରେଙ୍କିଲୋର୍‌ଙ୍କୁ ଜାଣିଛ ?'' ସେ ତାଙ୍କୁ ଭଲଭାବରେ ଚିହ୍ନିଛି ବୋଲି କହିବାରୁ, ମୁଁ କହିଲି, ''ମୁଁ ତାଙ୍କ ଘରପାଖକୁ ଯାଉଛି । ତେଣୁ ମୁଁ ଅପରାଧୀ ନୁହେଁ ଏହା ତୁମେ ନିଶ୍ଚିତ ଭାବରେ ବୁଝିପାରୁଥିବ । ମୁଁ ତୁମକୁ କିଛି କହିବାକୁ ଚାହେଁ । ଯଦିଓ ଏକ ଭୟାନକ ଭୁଲ କରି ମୁଁ ଗୋଟିଏ ବଡ଼ ବିପଦରେ ପଡ଼ିଛି, ତଥାପି ଏତିକି ଜାଣିରଖଯେ, ରାଜା ଜର୍ଜଙ୍କର ମୋପରି ପ୍ରିୟବନ୍ଧୁ ସାରା ସ୍କଟଲାଣ୍ଡରେ ଆଉ କେହି ନାହିଁ ।'' ମୋ କଥା ଶୁଣି ଝିଅଟିର ମୁହଁ ଉଜ୍ଜ୍ୱଳ ହୋଇଉଠିଲା; କିନ୍ତୁ ଆଲାନ୍‌ଙ୍କ ମୁହଁ ମଉଳିଗଲା । ଝିଅଟି କହିଲା, ''ମି: ରେଙ୍କିଲୋର୍ ଜଣେ ସମ୍ମାନାସ୍ପଦ ବ୍ୟକ୍ତି । ଆପଣ ମୋତେ ବିଶ୍ୱାସ କରନ୍ତୁ; ମୁଁ ଆପଣମାନଙ୍କୁ ଏ ନଦୀ ପାରି ହେବାରେ ସାହାଯ୍ୟ କରିବି ।''

ସେଦିନ ରାତିରେ ଝିଅଟି ନିଜେ ଗୋଟିଏ ଡଙ୍ଗା ଯୋଗାଡ଼ କଲା ଏବଂ ଆପଣା ହାତରେ ଆହୁଲା ମାରି ରାତିର ଅନ୍ଧକାର ମଧ୍ୟରେ ଆମ୍ଭମାନଙ୍କୁ ନଦୀପାରି କରିଦେଲା । ତା'ରି ସାହସିକତା ଓ ସହାୟତାରେ ଆମେମାନେ ଏତେ ମୁଗ୍ଧ ହୋଇ ଯାଇଥିଲୁ ଯେ, ପ୍ରଶଂସା କରି ତାକୁ ପଦେହେଲେ କଥା କହିପାରି ନଥିଲୁ । ସେ ଆମ୍ଭମାନଙ୍କୁ କୂଳରେ ଛାଡ଼ି ଚାଲିଯିବାର କିଛି ସମୟ ପର୍ଯ୍ୟନ୍ତ ଆଲାନ୍ ଗୋଟିଏ ସ୍ଥାନରେ ଛିଡ଼ାହୋଇ ବାରମ୍ବାର ଝିଅଟିର ଉଚ୍ଛ୍ୱସିତ ପ୍ରଶଂସା କରିବାରେ ଲାଗିଲେ ।

ବର୍ତ୍ତମାନ ଆମର କାର୍ଯ୍ୟ ହେଲା ମି: ରେଙ୍କିଲୋରଙ୍କୁ ଖୋଜି ବାହାର କରିବା । ଏ କାର୍ଯ୍ୟ ମୋତେ ହିଁ କରିବାକୁ ହେବ; କାରଣ ଆଲାନ୍ ଥିଲେ ନିମ୍ନାଞ୍ଚଳର ଜଣେ ଶତ୍ରୁ । ତେଣୁ ମୁଁ ତାଙ୍କୁ ଗୋଟିଏ ପଡ଼ିଆରେ ବସିବାକୁ କହି ଚାଲିଗଲି । ଆମ ଭିତରେ ଏହି ବୁଝାମଣା ରହିଲା ଯେ, ମୁଁ ତାଙ୍କୁ ଖୋଜିବାବେଳେ ସେ ମୋତେ ଶିଖାଇଥିବା ପାର୍ବତ୍ୟ ଅଞ୍ଚଳର ଏକ ନିର୍ଦ୍ଦିଷ୍ଟ ସ୍ୱରରେ ସିଟିମାରି ଇସାରାଦେବି ।

# ମି. ରେଙ୍କିଲୋର୍‌ଙ୍କଠାରେ ମୁଁ ପହଞ୍ଚିଲି

ଲୋକମାନେ ଠିକ୍ ସକାଳେ ଶଯ୍ୟା ତ୍ୟାଗ କଲାବେଳକୁ ମୁଁ କୁଇନସ୍‌ଫେରିରେ ପହଞ୍ଚିଲି । ଅଳ୍ପ ସମୟ ପରେ ସୂର୍ଯ୍ୟାଲୋକରେ ସହର ଉଦ୍ଭାସିତ ହୋଇଉଠିଲା । ମୋର ମନେହେଲା ମୁଁ ଯେପରି ମୋର ନାମ କହି ମୋର ପୈତୃକ ସମ୍ପତ୍ତି ଉପରେ ଥିବା ଦାବି ପ୍ରମାଣ କରିପାରିବିନାହିଁ । ଅପରିଷ୍କାର ଛିଣ୍ଡାଲୁଗା ପିନ୍ଧି ଆଶା କରି ପାରିବିନାହିଁ ଯେ, ମୁଁ ମି. ରେଙ୍କିଲୋର୍‌ଙ୍କ ସହିତ ସାକ୍ଷାତ କରିପାରିବି ବା ମୋ କଥାରେ ତାଙ୍କର ବିଶ୍ୱାସ ଆଣିଦେଇପାରିବି ।

ମୁଁ ବହୁଆଡୁ ବୁଲି ବୁଲି ହାଲିଆ ହୋଇଯିବାରୁ ଏକ ସୁନ୍ଦର ଅଟ୍ଟାଳିକା ସାମନାରେ ବିଶ୍ରାମ ନେବାପାଇଁ ଛିଡ଼ାହେଲି । ତାପରେ କ'ଣ କରିବି, କେଉଁଆଡ଼େ ଯିବିବୋଲି ଭାବୁଥାଏ । ଏତିକିବେଳେ ମୋ ଆଗରେ ଥିବା ଅଟ୍ଟାଳିକାର ଦରଜା ଖୋଲିଲା ଓ ଘର ଭିତରୁ ଜଣେ ଭଦ୍ରଲୋକ ବାହାରିଆସିଲେ । ମୁଁ ଛିଣ୍ଡାଲୁଗା ପିନ୍ଧି ଏପରି କିମ୍ଭୂତକିମାକାର ହୋଇଥାଏ ଯେ, ମୋତେ ଯିଏ ଥରେ ଦେଖୁଥିଲା ସେ ମୋ ଆଡ଼କୁ ଦୁଇଥର ଚାହୁଁଥିଲା । ମୋର ଦରିଦ୍ର ବେଶଭୂଷା ଦେଖି ସେ ବ୍ୟକ୍ତି ଏପରି ଆଶ୍ଚର୍ଯ୍ୟ ହେଲେ ଯେ, ମୋ ପାଖକୁ ସିଧାସଳଖ ଚାଲିଆସିଲେ ଏବଂ ମୁଁ କ'ଣ କରୁଛି ବୋଲି ପଚାରିଲେ ।

ମୁଁ କୁଇନ୍‌ସଫେରିକୁ ଏକ ବଡ଼ କାମରେ ଆସିଛି ବୋଲି ତାଙ୍କୁ କହିଲି ଏବଂ ଏହା ମଧ୍ୟ କହିଲି ଯେ, ଏହି କାମ ପାଇଁ ମୁଁ ମି: ରେଙ୍କିଲୋର୍‌ଙ୍କର ଘର ଖୋଜି ବୁଲୁଛି ।

ସେ କହିଲେ, ''ଏହି ଘରଟି ମି. ରେଙ୍କିଲୋର୍‌ଙ୍କର ଏବଂ ମୁଁ ନିଜେ ମି. ରେଙ୍କିଲୋର୍ । କିନ୍ତୁ ମୁଁ ତ ତୁମକୁ କେବେହେଲେ ଜାଣିନାହିଁ ।''

କହିଲି, ''ମୋର ନାମ ଡେଭିଡ୍ ବେଲ୍‌ଫାଓ୍ୱାର୍ ।'' ଆଶ୍ଚର୍ଯ୍ୟ ହୋଇ ସେ ଟିକିଏ ଉଚ୍ଚସ୍ୱରରେ କହିଲେ, ''ଡେଭିଡ୍ ବେଲ୍‌ଫାଓ୍ୱାର୍ ! ତୁମେ କେଉଁଠାରୁ ଆସିଲ ?'' ସେ ମୋ ପାଖକୁ ଲାଗି ଆସି ମୋ ଆଡ଼କୁ ଚାହିଁଲେ । ମୁଁ କହିଲି, ''ମୁଁ ଅନେକ ଅଜଣା ସ୍ଥାନ ଅତିକ୍ରମ କରିଆସିଲିଣି । ମୁଁ ଭାବୁଛି ସାର୍, ଆମେ କୌଣସି ନିଭୃତ ସ୍ଥାନକୁ ଯାଇ କଥାବାର୍ତ୍ତା ହେଲେ ଭଲହୁଅନ୍ତା ।''

ସେ କିଛି ସମୟ ପାଇଁ କ'ଣ ଚିନ୍ତା କଲେ । ତା'ପରେ ପ୍ରଥମେ ମୋ ଆଡ଼କୁ ଓ ତପ୍ରରେ ରାସ୍ତା ଆଡ଼କୁ ଚାହିଁ ଶେଷରେ କହିଲେ, ''ହଁ, ତାହାହିଁ କଲେ ହେବ ।''

ସେ ମୋତେ ତାଙ୍କ ଘର ଭିତରକୁ ନେଇଗଲେ । ତାଙ୍କ ଚାକରମାନଙ୍କୁ ଡାକି କହିଦେଲେ ଯେ ସେ ସକାଳଓଲିଟାଯାକ ପଢ଼ାପଢ଼ିରେ ବ୍ୟସ୍ତ ରହିବେ ।

ମି. ରେଙ୍କିଲୋର୍‌ଙ୍କୁ ମୋର ଦୁଃସାହସିକ ଭ୍ରମଣ ବୃତ୍ତାନ୍ତ କହି ଶୁଣାଇଲି । ସେହି ଖବରଗୁଡ଼ିକ ଭିତରୁ କେତେକ ଖବର ସେ ଆଗରୁ ଶୁଣିଥିଲେ । ଯେଉଁଦିନ ମୁଁ ଯାଉଥିବା ଜାହାଜରେ ଦୁର୍ଘଟଣା ଘଟିଲା ଠିକ୍ ସେହିଦିନ ଇସେଣ୍ଡିନ୍‌ର ଧର୍ମଯାଜକ ମି. କେମ୍ପବେଲ୍ ମୋ ଖବର ଜାଣିବାପାଇଁ ତାଙ୍କ ଅଫିସକୁ ଆସିଥିଲେ । ମି. ରେଙ୍କିଲୋର୍ ସେତେବେଳେ ମୋ କଥା କିଛି ଶୁଣି ନଥିଲେ । ପରେ ଖୁବ୍ ଶୀଘ୍ର ସେ ମୋ ବିଷୟରେ ଅନୁସନ୍ଧାନ କଲେ । ମୋର କକା ଇବେଞ୍ଜାର ମୋତେ ଦେଖିଛନ୍ତି ବୋଲି ସ୍ୱୀକାର କଲେ ଏବଂ ଛଳନା କରି କହିଲେ ଯେ, ଇଉରୋପରେ ମୋର ପାଠ ଶେଷ କରିବାପାଇଁ ବହୁତ ଟଙ୍କାଦେଇ ସେ ମୋତେ ପଠାଇଛନ୍ତି । ଅବଶ୍ୟ ତାଙ୍କର ଏହିକଥା କେହି ବିଶ୍ୱାସ କରିନଥିଲେ । ମୋ କକାଙ୍କର ଦୁର୍ଭାଗ୍ୟ ଯେ ଏହାପରେ ଖୁବ୍ ଶୀଘ୍ର କପ୍ତାନ୍ ହୋସିଜିନ୍ କୁଇନ୍‌ସଫେରିକୁ ଫେରିଆସି ଜାହାଜ ଦୁର୍ଘଟଣାରେ ମୁଁ ମରିଯାଇଥିବା କଥା ପ୍ରଚାର କଲେ । ମୁଁ କାହିଁକି ସେ ଜାହାଜରେ ଥିଲି ଏ କଥା କେହି ଜାଣିପାରିଲେ ନାହିଁ ।

ମୁଁ କିପରି ଅପହୃତ ହେଲି ଏବଂ ଜାହାଜ ଦୁର୍ଘଟଣା ପରେ ଦୁଇମାସ ଧରି କେଉଁ କେଉଁ ସ୍ଥାନରେ ଥିଲି ଇତ୍ୟାଦି କଥା ମି. ରେଙ୍କିଲୋର୍‌ଙ୍କୁ କହିଲି । ମୋ କଥା ଆରମ୍ଭ କରିବା ପୂର୍ବରୁ ମୁଁ ତାଙ୍କୁ ଶପଥ କରାଇଥିଲି ଯେପରି ସେ ମୋତେ ଆଲାନ୍‌ଙ୍କ ବିଷୟରେ କୌଣସି କଥା ଜାଣିବାପାଇଁ ଦ୍ୱିତୀୟଥର ନ ପଚାରନ୍ତି । ମୋର ଯାତ୍ରାପଥରେ ମୁଁ ଯେଉଁ ଯେଉଁ ପାର୍ବତ୍ୟଅଞ୍ଚଳବାସୀଙ୍କର ଘରେ ରହିଥିଲି, ସେମାନଙ୍କର ନାମ ତାଙ୍କୁ କହି ନଥିଲି । ଆଲାନ୍‌ଙ୍କର ନାମ ବଦଳାଇ ମୁଁ ମି. ଥମ୍ପସନ୍ ବୋଲି ତାଙ୍କର ପରିଚୟ ଦେଇଥିଲି । ଏହାଦ୍ୱାରା ଯଦି ଭବିଷ୍ୟତରେ ମି. ରେଙ୍କିଲୋର୍‌ଙ୍କୁ ପାର୍ବତ୍ୟଅଞ୍ଚଳର ଆଇନଅମାନ୍ୟକାରୀ ଆଲାନ୍‌ଙ୍କର ନାମ ଶୁଣିଛନ୍ତି କି ନାହିଁ ବୋଲି ପଚରାଯିବ ତା'ହେଲେ ସେ ନିଶ୍ଚୟ ନା'ବୋଲି କହିବେ ।

ମୁଁ ମୋ କଥା ଶେଷ କରିବାରୁ ଓକିଲବାବୁ କହିଲେ, "ତୁମର ଏହି ଭ୍ରମଣ କାହାଣୀ ବାସ୍ତବିକ ସୁଦୀର୍ଘ । ତୁମେ ଦିନେ ଏହାକୁ ପୁସ୍ତକାକାରରେ ଲେଖ । ତୁମେ ବିପଦ ଭିତରେ ଥାଇ ଯେଉଁଭଳି ସୁନ୍ଦର ଆଚରଣ ଦେଖାଇଛ ତାହା ତୁମର ଉଜ୍ଜ୍ୱଳ ଚରିତ୍ରବତ୍ତାର ପରିଚୟ ଦେଉଛି । ସାମାନ୍ୟ ଦୁର୍ଦ୍ଧର୍ଷ ହେଲେହେଁ ମି. ଥମ୍ପସନ୍ ମଧ୍ୟ ଜଣେ ଉତ୍ତମ ଚରିତ୍ରର ଭଦ୍ରଲୋକ ପରି ମନେହେଉଛନ୍ତି । ସେ ତୁମପ୍ରତି ଯେଉଁ ସହୃଦୟତା ଦେଖାଇଛନ୍ତି ଭାବୁଛି ତୁମେ ତାଙ୍କ ପ୍ରତି ଅନୁରୂପ ବ୍ୟବହାର ଦେଖାଇ ଠିକ୍ କାମ କରିଛ । ଯା'ହେଉ, ସୌଭାଗ୍ୟବଶତଃ ତୁମର ଦୁଃଖ ଚାଲିଯାଇଛି ଏବଂ ମୁଁ ଭାବୁଛି ନିକଟ ଭବିଷ୍ୟତରେ ତୁମ କଷ୍ଟର ସମାପ୍ତି ଘଟିବ ।"

ଏହାପରେ ସେ ପିନ୍ଧିବାପାଇଁ ମୋତେ ସୁନ୍ଦର ପୋଷାକ ଦେଲେ ଏବଂ ଖାଇବାପାଇଁ ସୁଖାଦ୍ୟର ବନ୍ଦୋବସ୍ତ କରିଦେଲେ । ଏହାପରେ ସେ ମୋତେ ମୋର ପରିବାର ସମ୍ବନ୍ଧରେ ଅନେକ କଥା କହିଲେ । ମୋ ବାପା ଇସେଣ୍ଡିନ୍‌ରେ କାହିଁକି ନିଜକୁ ଲୁଚାଇ ରଖିଥିଲେ ମୁଁ କିଛି ବୁଝି ନଥିଲି । ପ୍ରକୃତରେ ପ୍ରେମଜନିତ ଏକ ବ୍ୟାପାରକୁ ନେଇ ଗଣ୍ଡଗୋଳ ଆରମ୍ଭ ହୋଇଥିଲା ।

ଦିନେ ମୋର କକା ଇବେନ୍‌ଜାର ଅତି ସୁଶ୍ରୀ ଯୁବକ ଥିଲେ; ଅବଶ୍ୟ ଏବେ ତାଙ୍କୁ ଦେଖିଲେ ସେକଥା ଜଣାଯାଏ ନାହିଁ । ଏହା ଫଳରେ ସେ ପରିବାରରେ ଅନ୍ୟମାନଙ୍କଠାରୁ ସ୍ନେହ ଆଦର ପାଇ ନଷ୍ଟଚରିତ୍ର ହୋଇଗଲେ । ମୋର ବାପା ଓ ସେ ଉଭୟେ ଏକ ସ୍ତ୍ରୀଠାରେ ପ୍ରେମଭିକ୍ଷୁ ଥିଲେ । ଯେତେବେଳେ ସେ ସ୍ତ୍ରୀ କକାଙ୍କ ଅପେକ୍ଷା ବାପାଙ୍କୁ ବେଶି ପସନ୍ଦ କଲେ, କକା ମର୍ମାହତ ହୋଇପଡ଼ିଲେ । ସେ ବିଛଣାରେ ପଡ଼ି ଅନବରତ କାନ୍ଦିବାରେ ଲାଗିଲେ । ତାଙ୍କୁ ଅତ୍ୟଧିକ ଆଦର କରୁଥିବାରୁ ପରିବାରର ଅନ୍ୟମାନେ ତାଙ୍କ ବିଛଣା ଚାରିପଟେ ଛିଡ଼ାହୋଇ ଗଭୀର ଦୁଃଖ ପ୍ରକାଶ କଲେ । ମୋର ବାପା ଜଣେ ଉତ୍ତମ ଦୟାଳୁ ବ୍ୟକ୍ତି ଥିଲେ; କିନ୍ତୁ ମି. ରେଙ୍କିଲୋର୍‌ଙ୍କ କହିବାନୁଯାୟୀ ସେ ଥିଲେ ଖୁବ୍ ଦୁର୍ବଳ । ସବୁବେଳେ ବିଭିନ୍ନ ପୁସ୍ତକ ପାଠ କରିବାରେ ତାଙ୍କର ଆଦର ଥିଲା । କୌଣସି ପ୍ରକାର ଗଣ୍ଡଗୋଳ ଭିତରକୁ ନଯାଇ ସୁଖଶାନ୍ତିରେ ରହିବାପାଇଁ ସେ ପସନ୍ଦ କରୁଥିଲେ । ସର୍ବଶେଷରେ ଏହା ସ୍ଥିର ହେଲା ଯେ, ମୋର ବାପା ସେ ସ୍ତ୍ରୀଟିକୁ ପାଇବେ ଏବଂ ଚଳିବା ପାଇଁ ଅଳ୍ପ କିଛି ଟଙ୍କା ପେନସନ୍ ରୂପେ ପାଇବେ । କକା ଇବେନ୍‌ଜାର ଖୁସିରେ ରହିବା ପାଇଁ ସମସ୍ତ ଜମିଦାରୀର ମାଲିକ ହେବେ । ଏହି ସିଦ୍ଧାନ୍ତ ଅନୁଯାୟୀ ମୋର ବାପାଙ୍କୁ ଅବଶିଷ୍ଟ ଜୀବନ ଦାରିଦ୍ର୍ୟ ଓ ଦୁଃଖ ଭୋଗ କରିବାକୁ ପଡ଼ିଲା । ସ'ପରିବାରର ପ୍ରକୃତ ଉତ୍ତରାଧିକାରୀ ହୋଇଥିଲେ ହେଁ ମୋତେ ଏକ ଦରିଦ୍ର କୁଟୀରରେ ଜନ୍ମଗ୍ରହଣ କରି କାଳଯାପନ କରିବାକୁ ପଡ଼ିଲା । ମୁଁ ଯେ ସେହି ସମ୍ପତ୍ତିର ଉତ୍ତରାଧିକାରୀ ଏକଥା ମି. ରେଙ୍କିଲୋର୍‌ଙ୍କଠାରୁ ଜାଣିବାକୁ ପାଇଲି । ଆଇନର ଆଶ୍ରୟ ନ ନେଇ କକାଙ୍କୁ କିପରି ମୋର ଦାବି ବିଷୟରେ ସମ୍ମତ କରାଯାଇ ପାରିବ ସେହି ଉପାୟ ଚିନ୍ତା କରିବାରେ ଲାଗିଲୁ ।

ସେଦିନ ସନ୍ଧ୍ୟାବେଳେ ମୁଁ ଆଲାନ୍‌ଙ୍କୁ ଖୋଜିବା ପାଇଁ ଯିବା ସମୟରେ ମି. ରେଙ୍କିଲୋର୍ ଏବଂ ତାଙ୍କର କିରାଣି ଟରେନସ୍ ମୋ ସହିତ ଗଲେ । ମୁଁ ରାସ୍ତାରେ ଆଗେ ଆଗେ ଚାଲିଥାଏ । ଯିବା ସମୟରେ ସେ ମୋତେ ଶିଖାଇଥିବା ସ୍କଟଲାଣ୍ଡୀୟ ଗୀତର ସ୍ୱର ସିଟି ମାରି ମାରି ଯାଉଥାଏ । ଆଲାନ୍ ଏହା ଶୁଣି ମୋ ପାଖକୁ ଆସିଲେ । ମୋର ନୂଆପୋଷାକ ଦେଖି ସେ ଖୁବ୍ ଆନନ୍ଦିତ ହେଲେ ଏବଂ ଆମର ନୂତନ କାର୍ଯ୍ୟପନ୍ଥା ବିଷୟ ଶୁଣି ଆନନ୍ଦରେ ଡେଇଁପଡ଼ିଲେ । ସେ କହିଲେ, "ତୁମର ଏହି ଉପାୟକୁ ମୁଁ ଖୁବ୍ ପସନ୍ଦ କରୁଛି ଏବଂ ତୁମକୁ ସବୁମତେ ସାହାଯ୍ୟ କରିବି ।"

ସେ ଏକଥା କହିସାରିଲା ବେଳକୁ ମି. ରେଙ୍କିଲୋର ଏବଂ ତାଙ୍କ କିରାଣି ସେ ସ୍ଥାନରେ ପହଞ୍ଚି ଯାଇଥିଲେ । ମୁଁ ମି: ରେଙ୍କିଲୋର୍‌କୁ ଆଲାନ୍‌ଙ୍କ ସହିତ ପରିଚିତ କରାଇଦେଲି । ପରିଚୟ ଦେବାବେଳେ ଆଲାନ୍ ବ୍ରେକ୍‌ଙ୍କ ନାମ ବଦଳାଇ ମି: ଥମ୍ପସନ୍ ବୋଲି କହିବାକୁ ଭୁଲିଯାଇନଥିଲି । ଆମେ ଚାରିଜଣଯାକ ସ'ପରିବାରର ବାସଗୃହ ଆଡ଼କୁ ଚାଲିଲୁ । ସେତେବେଳକୁ ସମୟ ଦଶଟା ହୋଇଥାଏ । ସେଠାରେ ପହଞ୍ଚିବାବେଳକୁ ଅନ୍ଧାର ହୋଇଗଲା । ଓକିଲବାବୁ, ଟରେନସ୍ ଓ ମୁଁ ଘରର ଦରଜା ପାଖରେ ଲୁଚିରହିଲୁ । ଲୁଚିଯିବା ପରେ ଆଲାନ୍ ସିଧା ଦରଜା ନିକଟକୁ ଗଲେ ଏବଂ ଦରଜା ଖୋଲିବା ପାଇଁ ଶବ୍ଦ କଲେ ।

# ମୁଁ ମୋର ପୈତୃକ ସମ୍ପତ୍ତି ଲାଭକଲି

କିଛି ସମୟ ଧରି ଆଲାନ୍ ଦରଜାରେ ଆଘାତ କରିବାକୁ ଲାଗିଲେ; କିନ୍ତୁ କେହି ଉତ୍ତର ଦେଲେ ନାହିଁ । ଶେଷରେ ଗୋଟିଏ ଝରକା ଖୋଲିଲା ଓ କକା ସେହି ବାଟେ ବାହାରକୁ ଚାହିଁଲେ । ସେ ପାହାଚ ଉପରେ ଆଲାନ୍‌କୁ କେବଳ ଦେଖିଲେ, କିନ୍ତୁ ଆମେ ତିନିଜଣ ଲୁଚି ରହି ସବୁ ଦେଖୁଥାଉଁ ।

କକା କମ୍ପିତସ୍ୱରରେ କହିଲେ, ''ଏହା କ'ଣ ହେଉଛି ? ଏପରି ଏକ ଅସମୟରେ କାହିଁକି ଡାକୁଛ ? ଜାଣିରଖ ଯେ ମୋ ପାଖରେ ଏକ ବନ୍ଧୁକ ଅଛି ।''

ଆଲାନ୍ ପଚାରିଲେ, ''ଆପଣ କଣ ମି. ବେଲଫାଓ୍ୱାର୍ ? ତେବେ ସେହି ବନ୍ଧୁକର ଯତ୍ନ ନିଅନ୍ତୁ ।''

କକା କ୍ରୋଧାନ୍ୱିତ ହୋଇ କହିଲେ ''ତୁମେ କ'ଣ ଚାହଁ ? ତୁମେ କିଏ ?''

ଆଲାନ୍ କହିଲେ, ''ଏଠାରେ ଛିଡ଼ାହୋଇ ମୋର ନାମଟା କହିବାକୁ ଭଲ ଲାଗୁନାହିଁ; କିନ୍ତୁ ମୋର ଆପଣଙ୍କ ପାଖରେ ଥିବା କାମ ବିଷୟରେ ମୁଁ କେବଳ ଗୋଟିଏ ଶବ୍ଦ କହିବି । ତାହା ହେଉଛି– ଡେଭିଡ୍ ।'' ସ୍ୱର ପରିବର୍ତ୍ତନକରି କକା ପୁଣି ପଚାରିଲେ, ''ତୁମେ କ'ଣ କହୁଛ ?'' ଆଲାନ୍ କହିଲେ, ''ନାମରେ ଅବଶିଷ୍ଟାଂଶ କହିବି କି ?'' କିଛି ସମୟ ପାଇଁ ନୀରବତା ରାଜତ୍ୱ କଲା । ତା'ପରେ କକା କହିଲେ, ''ତୁମେ ଭିତରକୁ ଆସିଲେ ଭଲ ହେବ ବୋଲି ଭାବୁଛି ।''

ଆଲାନ୍ କହିଲେ, ''ଆପଣ ସେପରି ଭାବିପାରନ୍ତି; କିନ୍ତୁ ମୁଁ ଭାବୁଛି କଥାବାର୍ତ୍ତା ପାଇଁ ଏହି ଦ୍ୱାରମୁହଁ ହିଁ ମୋ ପକ୍ଷରେ ସବୁଠାରୁ ଭଲ ସ୍ଥାନ । ମୁଁ ଏହି ସ୍ଥାନରେ ଯାହା କିଛି କହିବି ।''

ଏହା ଶୁଣି ମୋର କକା ଅଳ୍ପ ଆଶ୍ଚର୍ଯ୍ୟ ହେଲେ; କିନ୍ତୁ ଶେଷରେ ସେ ଝରକା ବନ୍ଦ କରି ତଳକୁ ଆସିଲେ ଏବଂ ଦରଜା ଖୋଲିଲେ । ସେ ଧୀରେ ଧୀରେ ବାହାରକୁ ଆସି ଦୁଆରେ ଥିବା ପାହାଚ ଉପରେ ବସୁ ବସୁ କହିଲେ, ''ତୁମେ ମୋ ହାତରେ ବନ୍ଧୁକ ଦେଖୁଛ । ଯଦି ଏକ ପହଣ୍ଡ ଆଗକୁ ଆସିବ, ତେବେ ନିଶ୍ଚୟ ଗୁଳି କରିବି ।''

ଆଲାନ୍ କହିଲେ, ''ତାହାହେଲେ ମୁଁ ଶୀଘ୍ର ମୋର କଥା କହି ଚାଲିଯିବି । ମୁଁ ପାର୍ବତ୍ୟ ଅଞ୍ଚଳର ଜଣେ ଭଦ୍ରଲୋକ । ଅଳ୍ପ କିଛି ସମୟ ପୂର୍ବରୁ ମୁଲ୍ ଦ୍ୱୀପ ନିକଟରେ ଗୋଟିଏ ଜାହାଜ ବୁଡ଼ିଗଲା । ଦୁର୍ଘଟଣା ଘଟିଥିବା ସ୍ଥାନର ଖୁବ୍ ନିକଟରେ ମୋ ପରିବାରର ଜଣେ ଭଦ୍ରଲୋକ ବାସ କରନ୍ତି । ଅର୍ଦ୍ଧନିମଗ୍ନ ପିଲା ଜଣେ ପାଇ ସେ ତାକୁ ଆଣି ପାଖରେ ରଖିଛନ୍ତି । ମି. ବେଲଫାଓ୍ୱାର୍, ମୋର ବନ୍ଧୁମାନେ ସାମାନ୍ୟ ହିଂସ୍ର । ପିଲାଟି ଆପଣଙ୍କ ପୁତୁରା ବୋଲି ଜାଣି ସେମାନେ ଆପଣଙ୍କ ସହିତ କଥାବାର୍ତ୍ତା କରିବାପାଇଁ ମୋତେ ପଠାଇଛନ୍ତି । ସେମାନେ କହୁଛନ୍ତି– ଆପଣ ସେମାନଙ୍କୁ ଯଥେଷ୍ଟ ଅର୍ଥ ନଦେଲେ ଆପଣ ପୁନରାୟ ସେ ପିଲାକୁ ଦେଖିବାକୁ ପାଇବେ ନାହିଁ ।''

ମୋର କକା ଏହାଶୁଣି ମୁଣ୍ଡରେ ହାତ ବୁଲାଇ କହିଲେ, ''ମୁଁ ସେ କଥାକୁ ଖାତିର କରେ ନାହିଁ । ସେ କେବେହେଲେ ଭଲ ପିଲା ନଥିଲା । ତେଣୁ ମୁଁ ତାକୁ ସାହାଯ୍ୟ କରିପାରିବିନାହିଁ ।''

ଆଲାନ୍ କହିଲେ, ''ଦେଖନ୍ତୁ ମି. ବେଲଫାଓ୍ୱାର୍, ଆପଣଙ୍କର ଏଭଳି କଥା ପସନ୍ଦଯୋଗ୍ୟ ନୁହେଁ । ଆପଣ ନିଜର ପୁତୁରାକୁ ଏପରି ଅନାଦର କରନ୍ତି ଜାଣିଲେ ଲୋକମାନେ ଆପଣଙ୍କୁ ନିଶ୍ଚୟ ଘୃଣା କରିବେ ।'' ଇବେନ୍‌ଜାର୍ କହିଲେ, ''ମୁଁ ଏଠାରେ ଖୁବ୍ ଲୋକପ୍ରିୟ ନୁହେଁ । ତା'ଛଡ଼ା ଏକଥା ବା ଲୋକମାନେ ଜାଣିବେ କିପରି ?''

ଆଲାନ୍ କହିଲେ, ''କେହି ନ ଜାଣିଲେ ବି ନିଜେ ଡେଭିଡ୍ ତ ଜାଣିବ ! ମୋର ବନ୍ଧୁମାନେ ମୋ ହାତରେ ଦୁଇଟି କଥା କହି ପଠାଇଛନ୍ତି । ଆପଣ ମୋ ହାତରେ ଯଥେଷ୍ଟ ଅର୍ଥ ଦେଲେ ଡେଭିଡ୍‌କୁ ଫେରିପାଇବେ । ଦ୍ୱିତୀୟ କଥା ହେଲା, ଆପଣ ଯଦି ଡେଭିଡ୍‌କୁ ଅନାଦର କରୁଥାନ୍ତି ଏବଂ ଫେରିପାଇବାକୁ ଚାହୁଁ ନଥାନ୍ତି, ତେବେ ପ୍ରଚୁର ଅର୍ଥର ବିନିମୟରେ ଆପଣଙ୍କର ସେ ପ୍ରକାରର ଆଶା ପୂରଣ କରିପାରିବେ । କାରଣ ଅର୍ଥ ପ୍ରାପ୍ତି ପରେ ମୋର ବନ୍ଧୁମାନେ ସବୁଦିନ ପାଇଁ ତାକୁ ଲୁଚାଇ ରଖିବେ । ଏହି ଦୁଇ ପନ୍ଥା ମଧ୍ୟରୁ ଆପଣ ଯେଉଁ ଗୋଟିକ ଧରିବାକୁ ଇଚ୍ଛା କଲେ ବି ଅର୍ଥ ଦେବାକୁ ହେବ ।''

ମୋର କକା କିଛି କହିଲେ ନାହିଁ । ମାନସିକ ଅଶାନ୍ତିବଶତଃ ତାଙ୍କ ବସିଥିବା ଜାଗାରେ ହଲିବାକୁ ଲାଗିଲେ । ଆଲାନ୍ କହିଲେ, ''ବର୍ତ୍ତମାନ ମାତ୍ର ଦୁଇଟି ଶବ୍ଦରେ ମୋ କଥାର ଉତ୍ତର ଦିଅନ୍ତୁ । ପିଲାଟିକୁ ମାରିଦେବାକୁ ଚାହାନ୍ତି ନା ରଖିବାକୁ ଚାହାନ୍ତି ?''

ଇବେନ୍‌ଜାର କହିଲେ, ‘‘ଦେଖ, ଏପରିଭାବରେ ତୁମ କଥାର ଉତ୍ତର ଦେବା ଠିକ୍ ହେବ ନାହିଁ ।’’

ଆଲାନ୍ ପୁଣି ପଚାରିଲେ, ‘‘ଶୀଘ୍ର କୁହନ୍ତୁ, ତାକୁ ମାରିବା ନା ରଖିବା ?’’

କକା ଦୁଃଖର ସହିତ କହିଲେ, ‘‘ଚୁପ୍ ରୁହ, ଚୁପ୍ ରୁହ । ମୁଁ ଜଣେ ସାଧୁ ପ୍ରକୃତିର ଲୋକ । ମୋ ଠାରୁ ଅର୍ଥନେବା ଯେବେ ନିତାନ୍ତ ପ୍ରୟୋଜନ ବୋଲି ମନେକର ତେବେ ମୁଁ ପ୍ରସ୍ତୁତ ଅଛି, କିନ୍ତୁ ସେ ପିଲା ମୋ ନିଜ ଭାଇଙ୍କର ପୁଅବୋଲି ତୁମେ ଭୁଲିଯାଅ ।’’

ଆଲାନ୍ କହିଲେ, ‘‘ଆଚ୍ଛା, ତାହାହିଁ ହେଉ । ତେବେ ଆପଣ କେତେ ଟଙ୍କା ଦେଇପାରିବେ ? ତାକୁ ମାରିଦେବା ଆମ ପକ୍ଷରେ ସହଜ; କିନ୍ତୁ ତାକୁ ରଖିବା ଏକ କଷ୍ଟକର ବ୍ୟାପାର । ତେବେ ମୁଁ ପ୍ରଥମେ ଗୋଟିଏ ଛୋଟ କଥା ଜାଣିବାକୁ ଚାହୁଁଛି । ଡେଭିଡ୍‌କୁ ଅପହରଣ କରିନେବା ପାଇଁ ଆପଣ ହୋସିଜିନ୍‌କୁ କେତେ ଅର୍ଥ ଦେଇଥିଲେ ?’’

କକା କହିଲେ, ‘‘ମିଛ କଥା, ମିଛ କଥା, ସେ କେବେହେଲେ ଅପହୃତ ହୋଇନାହିଁ । ଯେଉଁଲୋକ ତୁମକୁ ଏକଥା କହିଛି, ସେ ମିଛ କହିଛି ।’’

ଆଲାନ୍ କହିଲେ, ‘‘ମହାଶୟ, ଆପଣ ବୃଦ୍ଧ; କିନ୍ତୁ ନିର୍ବୋଧ । କାରଣ ହୋସିଜିନ୍ ମୋର ଅଂଶୀଦାର । ସେ ନିଜେ ମୋତେ ଏକଥା କହିଛନ୍ତି । ତେଣୁ ମିଛ କଥା କହନ୍ତୁ ନାହିଁ । କଥା ହେଉଛି ଆପଣ ତାକୁ କେତେ ଅର୍ଥ ଦେଇଥିଲେ ?’’

ମୋର କକା ପଚାରିଲେ, ‘‘ସେ ନିଜେ କ’ଣ ତୁମକୁ ଏକଥା କହିଥିଲେ ?’’

‘‘ସେ କଥା ମୁଁ ବୁଝିବି ।’’

କକା କହିଲେ, ‘‘ସେ ତୁମକୁ ମିଛକଥା କହିଛନ୍ତି । ପ୍ରକୃତରେ ମୁଁ ତାକୁ କୋଡ଼ିଏ ପାଉଣ୍ଡ ଦେଇଥିଲି; କିନ୍ତୁ ସେ ପିଲାଟିକୁ କୋରାଲିନାରେ ବିକ୍ରି କରି କିଛି ଅଧିକ ଅର୍ଥ ଉପାର୍ଜନ କରିବାର କଥା ଥିଲା ।’’

ଅଚାନକ ଭାବରେ ଆଗକୁ ବାହାରି ଆସି ମି. ରେଙ୍କିଲୋର୍ କହିଲେ, ‘‘ଧନ୍ୟବାଦ ମି. ଥମ୍ପସନ୍ ! ସେତକ କଥା ହିଁ ଆମର ଶୁଣିବାର ଥିଲା ।’’ ଏହାପରେ ମୁଁ ଆସି ସେଠାରେ ପହଞ୍ଚିଗଲି । ଟରେନ୍‌ସ କହିଲେ, ‘‘ଜାଣିଲେ ମିଷ୍ଟର୍ ବେଲ୍‌ଫାଓ୍ୱାର୍, ଆଜିର ଏହି ରାତିଟି ଆରାମଦାୟକ ।’’

କକା ପଦେହେଲେ କଥା ନକହି ସେହି ସ୍ଥାନରେ ପଥର ପରି ବସି ଆମମାନଙ୍କୁ ନିରୀକ୍ଷଣ କଲେ । ଏହିପରି ସମୟରେ ଆଲାନ୍ ତାଙ୍କ ବନ୍ଧୁକଟି ନେଇଗଲେ । ମି. ରେଙ୍କିଲୋର୍ ତାଙ୍କ ହାତ ଧରି ରୋଷେଇଘରକୁ ନେଇଗଲେ । ସେଠାରେ ନିଆଁ ଜଳୁଥାଏ । ଆମେ ସମସ୍ତେ ବିଜୟୋଲ୍ଲାସରେ ଆତ୍ମହରା ହୋଇଥାଉ । ମାତ୍ର କକାଙ୍କର ପରାଜୟ ଏବଂ ଲଜ୍ଜା ଯୋଗୁଁ ତାଙ୍କ ପ୍ରତି ଦୟା ଆସୁଥାଏ ।

ମି. ରେଙ୍କିଲୋର୍ କକାଙ୍କୁ କହିଲେ, ''ଦେଖନ୍ତୁ ଇବେନଜାର୍, ଆପଣ ଖୁବ୍ ବେଶି ଦୁଃଖିତ ହୁଅନ୍ତୁ ନାହିଁ । ମୁଁ ପ୍ରତିଜ୍ଞା କରୁଛି, ଆମେ ଆପଣଙ୍କ ପ୍ରତି ବିଶେଷ ନିଷ୍ଠୁର ହେବୁ ନାହିଁ ।'' ତପ୍‌ରେ ମୋ ହାତ ଧରି ସେ ମୋତେ ତାଙ୍କ ଆଡ଼କୁ ଟାଣିନେଲେ । କହିଲେ ''ଡେଭିଡ଼୍, ସୌଭାଗ୍ୟ ଲାଭ କରି ତୁମେ ଏଣିକି ଆନନ୍ଦରେ ରୁହ ଏହାହିଁ ମୋର କାମନା । ଆଉ ମୁଁ ବିଶ୍ୱାସ କରେ ଯେ ସେହି ସୌଭାଗ୍ୟ ଲାଭ କରିବାକୁ ତୁମର ପୂର୍ଣ୍ଣ ଅଧିକାର ଅଛି ।''

ମୁଁ କୃତଜ୍ଞତାରେ ତାଙ୍କୁ ଧନ୍ୟବାଦ ଜଣାଇଲି । ଆହୁରି ଅଧିକ କୃତଜ୍ଞ ହେଲି ମୋର ବନ୍ଧୁ ଆଲାନ୍‌ଙ୍କଠାରେ । ଟରେନ୍‌ସ ଆଣିଥିବା ଖାଦ୍ୟ ନେଇ ରାତ୍ରିଭୋଜନପାଇଁ ସମସ୍ତେ ବସିଲୁ । ଓକିଲବାବୁ ଏବଂ ମୋର କକା ନିକଟସ୍ଥ ଗୋଟିଏ କୋଠରିକୁ ଗଲେ । ସେଠାରେ ସେମାନେ ପ୍ରାୟ ଏକ ଘଣ୍ଟା ରହିଲେ । ସେମାନେ ଗୋଟିଏ ସୁନ୍ଦର ଚୁକ୍ତିରେ ସ୍ୱୀକୃତ ହେବା ପରେ କକା ଓ ମୁଁ କରମର୍ଦ୍ଦନ କଲୁ ।

ସେଦିନ ରାତିରେ ରୋଷାଇ ଘର ଚଟାଣରେ ମୁଁ ଶୋଇଲି; କିନ୍ତୁ ଶୋଇବାକୁ ଇଚ୍ଛା ହେଲାନାହିଁ । ବିଗତ କେତେ ରାତିରକଥା ମନେ ପଡ଼ିଲା । କ୍ଷୁଧାତୁର ହୋଇ, ଜୀବନ ପ୍ରତି ଭୟର ଆଶଙ୍କା ରଖି ଖୋଲାପଡ଼ିଆରେ ଗୋଡ଼ିପଥର ଆବର୍ଜନା ଉପରେ କଟିଯାଇଥିବା ରାତିଗୁଡ଼ିକର ସ୍ମୃତି ମନ ଭିତରେ ଚେଇଁଉଠିଲା । କ୍ରମେ ରାତ୍ରିର ଅନ୍ଧକାର କାଟି ଧରାପୃଷ୍ଠକୁ ସୁପ୍ରଭାତ ଓହ୍ଲାଇଆସିଲା ।

# ବିଦାୟ

ମୁଁ ନିଜେ ଆସି ନିରାପଦରେ ଘରେ ପହଞ୍ଚିଥିଲେ ହେଁ ଆଲାନ୍‌ଙ୍କ କଥା ବୁଝିବା ମୋର ଏକାନ୍ତ କର୍ତ୍ତବ୍ୟ ଥିଲା । କାରଣ ଜୀବନରେ ଯଦି କାହା ପାଖରେ ମୁଁ ଅତ୍ୟଧିକ ଋଣୀ ହୋଇଥାଏ ସେ ହେଉଛନ୍ତି ଆଲାନ୍ । ତହିଁ ପରଦିନ ସକାଳେ ମୁଁ ମି. ରେଙ୍କିଲୋର୍‌ଙ୍କ ସହିତ ଏହି ବିଷୟରେ କଥାବାର୍ତ୍ତା ହେଲି । ସ'ପରିବାରର ଗୃହ ଆଗରେ ଆମେ ଦିହେଁ ଆଗପଛ ହୋଇ ଚଲାବୁଲା କରୁଥାଉ । ଆଖି ଆଗରେ ମୋର ନିଜର ବିସ୍ତୃତ ଶସ୍ୟକ୍ଷେତ୍ର ଏବଂ ବୃକ୍ଷଲତା ଅରଣ୍ୟ ଦେଖି ମୁଁ ଆନନ୍ଦରେ ଆତ୍ମହରା ହୋଇପଡୁଥାଏ ।

ମୋର ବନ୍ଧୁଙ୍କ ପ୍ରତି ଯେ ମୋର କର୍ତ୍ତବ୍ୟ ରହିଛି ଏ ବିଷୟରେ ମି. ରେଙ୍କିଲୋର୍ ମୋ ସହିତ ସମ୍ପୂର୍ଣ୍ଣ ଭାବରେ ଏକମତ ହେଲେ । ମୁଁ ଯେ କୌଣସି ବିପଦ ବରଣ କରି ମଧ ତାଙ୍କୁ ସ୍କଟ୍‌ଲାଣ୍ଡରୁ ପଳାଇ ଯିବାରେ ନିଶ୍ଚୟ ସାହାଯ୍ୟ କରିବି । ଆବଶ୍ୟକୀୟ ସମସ୍ତ କାର୍ଯ୍ୟ କରିବା ପାଇଁ ଓକିଲବାବୁ ମୋତେ ଯଥେଷ୍ଟ ଟଙ୍କା

ଦେଲେ; କିନ୍ତୁ ଗୋଟିଏ ଜିନିଷ ମୋତେ ବଡ଼ ଅଡୁଆରେ ପକାଉଥାଏ । ପାର୍ବତ୍ୟଅଞ୍ଚଳର ଗ୍ରାମମାନଙ୍କରେ ଜାରିହୋଇଥିବା ନୋଟିସ୍‌ରେ ମୋତେ ହତ୍ୟାକାଣ୍ଡରେ ଅଭିଯୁକ୍ତ କରାଯାଇଥିବାର ମୁଁ ଦେଖିଆସିଥାଏ । ସେହି ନୋଟିସ୍‌ରୁ ମୋର ନାମଟି କିପରି କଟିବ ତାହାହିଁ ମୋର ଚିନ୍ତାର ବିଷୟ ହୋଇଥାଏ । ଠିକ୍ କଲି ଏଡ଼ିନବର୍ଗରେ ଥିବା ଆଡ୍‌ଭୋକେଟ ଜେନେରାଲଙ୍କ ପାଖକୁ ସଙ୍ଗେ ସଙ୍ଗେ ଯାଇ କଲିନ କେମ୍ପବେଲ୍‌ଙ୍କ ହତ୍ୟାକାଣ୍ଡର ରହସ୍ୟ ଯାହା ମୁଁ ନିଜ ଆଖିରେ ଦେଖିଥିଲି ସବୁ ଟିକିନିଖି କହିବି । ମୁଁ ଅନୁଭବ କଲି, ଏ କାମ ଶେଷ ନହେବା ପର୍ଯ୍ୟନ୍ତ ମୁଁ ଫେରିପାଇଥିବା ମୋର ସମ୍ପତ୍ତି କେବେ ହେଲେ ଉପଭୋଗ କରିପାରିବିନାହିଁ ।

ଯେତେବେଳେ ଆଲାନ୍ ଓ ମୁଁ ଏଡ଼ିନବର୍ଗ ଉଦ୍ଦେଶ୍ୟରେ ଯାତ୍ରାକଲୁ, ଆମେ ପୁଣି କେବେ ଆଉଥରେ ଏକତ୍ରିତ ହେବୁ ଏ ଚିନ୍ତା ସେତେବେଳେ କରି ନଥିଲୁ । ମୁଁ ଆଡ୍‌ଭୋକେଟ ଜେନେରାଲଙ୍କୁ କ'ଣ କହିବି ଏବଂ ଆଲାନ୍ ଫ୍ରାନ୍‌ସ ଯିବାପାଇଁ କିପରି ଜାହାଜ ଠିକ୍ କରିବେ ସେହି ବିଷୟରେ ଆମେ କଥାବାର୍ତ୍ତା ହେଉଥାଉଁ । ତାଙ୍କୁ ମି. ଥମସନ ବୋଲି ଡାକି ମୁଁ ତାଙ୍କ ସହିତ ଥଟ୍ଟା କରୁଥାଏ । ସେ ମୋର ନୂତନ ପୋଷାକ ଏବଂ ମୋର ସମ୍ପଦ କଥା କହି ମୋ ସହିତ ମଜା କରୁଥାନ୍ତି; କିନ୍ତୁ କେତେବେଳେ ହେଲେ ହସିବା ତ ଦୂରର କଥା, ଆମ ଆଖିରେ ପ୍ରାୟ ଲୁହ ଜକେଇ ଆସୁଥାଏ ।

ଅବଶେଷରେ ଆମେ ଆସି ବିଦାୟ ନେବା ସ୍ଥାନରେ ପହଞ୍ଚିଲୁ । ଆଲାନ୍ କହିଲେ, ''ବିଦାୟ ବନ୍ଧୁ ଡେଭିଡ୍— ବିଦାୟ !'' ସେ ମୋ ଆଡ଼କୁ ତାଙ୍କ ହସ୍ତ ପ୍ରସାରିତ କଲେ ।

ମୁଁ ତାଙ୍କୁ ବିଦାୟ ଜଣାଇ, ତାଙ୍କର ପ୍ରସାରିତ ହସ୍ତକୁ ଧରି ଓ ସାମାନ୍ୟ ଚିପିଦେଇ ପାହାଡ଼ ତଳ ରାସ୍ତାରେ ଏକମୁହାଁ ହୋଇ ଚାଲିଲି ।

ଆମ ଦୁହିଁଙ୍କ ଭିତରୁ କେହି କାହାରି ମୁହଁକୁ ଚାହିଁପାରିଲୁନାହିଁ । ମୁଁ ଏବେ ବହୁ ସମ୍ପଦର ମାଲିକ ହେଲେହେଁ ଆଲାନ୍‌କୁ ହରାଇ ନିଜକୁ ଏପରି ନିଃସ୍ୱ, କାଙ୍ଗାଳ ଏବଂ ସାଥିହରା ବୋଧକଲି ଯେ ରାସ୍ତା ଧାରରେ ବସି ଏକ ଅବୋଧ ଶିଶୁପରି କ୍ରନ୍ଦନ କରିବାକୁ ମୋର ମନହେଲା ।

❑❑❑

## ସ୍କୁଲ ଛାତ୍ରଛାତ୍ରୀଙ୍କର ଅତି ପ୍ରିୟ ବହିବିଶ୍ୱସାହିତ୍ୟ ଗ୍ରନ୍ଥମାଳା

ଅଲିଭର ଟୁଇଷ୍ଟ
ଦୁଇଟି ନଗରୀର କାହାଣୀ
ଡେଭିଡ୍ କପରଫିଲଡ୍
ଅନେକ ଆଶା
ନିକୋଲାସ୍ ନିକଲବି
ଚକ୍ରାନ୍ତକାରୀ
କୋଡ଼ିଏବର୍ଷ ପରେ
ମଣ୍ଟିକ୍ରିଷ୍ଟୋର ରାଜା
କର୍ସିକାନ୍ ଦୁଇଭାଇ
ବିଚିତ୍ର ତାବିଜ
ମଣ୍ଟରୋଜର ଉପକଥା
ରାଜା ସଲୋମନଙ୍କ ହୀରାଖଣି
ଟମ ସଏର୍
ହକଲବରୀ ଫିନ୍‌ର କାହାଣୀ
ରାଜପୁତ୍ର ଓ ଭିକାରୀ
ପଂପେଇନଗରୀର ଶେଷଦିନ
ଅଶୀଦିନରେ ପୃଥିବୀ ପରିକ୍ରମଣ
ହେଣ୍ଟର ରୁପର୍ଟ
ଜେଣ୍ଡାଦୁର୍ଗର ବନ୍ଦୀ
ସୁଇସ୍ ରବିନ୍‌ସନ୍
ରତ୍ନଦ୍ୱୀପ
ଭୌତିକ ବୋତଲ
ପ୍ରବାଳଦ୍ୱୀପ
ଅଦୃଶ୍ୟମାନବ
ଟାଇମ୍ ମେସିନ୍
ଚନ୍ଦ୍ରପୃଷ୍ଠରେ ପ୍ରଥମମାନବ
ଗଲିଭରର ଭ୍ରମଣକାହାଣୀ
ସାଇଲାସ୍ ମାରନର
ରବିନ୍‌ସନ୍ କ୍ରୁଶୋ
ରବିନ୍ ହୁଡ୍
ଟମକକାଙ୍କ କେବିନ୍
ମୁଦି ଓ ଗୋଲାପ
ଚନ୍ଦ୍ରକାନ୍ତମଣି
ସେରଲକ୍ ହୋମସ୍ କାହାଣୀ
ଦେବମାନବ ହରକ୍ୟୁଲିସ୍
ଭୌତିକ କୁକୁର

ପାପ ଓ ପ୍ରାୟଶ୍ଚିତ
ବିପନ୍ନ ନାବିକର କାହାଣୀ
ରାଜା ଆର୍ଥରଙ୍କ ଯୋଦ୍ଧାଗଣ
ଆନନ୍ଦ ମଠ
ମୃଚ୍ଛକଟିକ ଓ ମୁଦ୍ରାରାକ୍ଷସ
ଶକୁନ୍ତଳା
ସେକସ୍‌ପିଅର କାହାଣୀ ୧ମ, ୨ୟ, ୩ୟ
ପିଲାଙ୍କ କଥାସରିତ ସାଗର
ଟଲଷ୍ଟୟ କାହାଣୀ · ୧ମ, ୨ୟ, ୩ୟ
ହୋମର୍ କାହାଣୀ
ଆଣ୍ଡରସନ୍‌ଙ୍କ କାହାଣୀ
ଗର୍କୀ କାହାଣୀ : ୧ମ, ୨ୟ
ଫକୀରମୋହନଙ୍କ କାହାଣୀ : ୧ମ, ୨ୟ
ମୋପାସାଁ କାହାଣୀ: ୧ମ, ୨ୟ, ୩ୟ, ୪ର୍ଥ
ପ୍ରେମଚନ୍ଦ କାହାଣୀ: ୧ମ, ୨ୟ, ୩ୟ, ୪ର୍ଥ
ଆରବଦେଶର କାହାଣୀ
ସିନ୍ଦବାଦ କାହାଣୀ
ଆଲାଦ୍ଦୀନର କୁହୁକଦୀପ
ମହାକବି କାଳିଦାସ କାହାଣୀ ୧ମ, ୨ୟ
ପିଲାଙ୍କ ଛ'ମାଣ ଆଠଗୁଣ୍ଠ
ଗ୍ରୀମ୍‌ସଙ୍କ କାହାଣୀ · ୧ମ, ୨ୟ
ବୀରବଲ କାହାଣୀ
ରିପଭାନ୍ ଉଇଙ୍କଲ
ଦୁଃଖ ପରେ ସୁଖ
ଜାତକ କାହାଣୀ : ୧ମ, ୨ୟ, ୩ୟ, ୪ର୍ଥ
ବେତାଳ କାହାଣୀ : ୧ମ, ୨ୟ
ବାଇବେଲ କାହାଣୀ ୧ମ, ୨ୟ
ରାମାୟଣ କାହାଣୀ
ମହାଭାରତ କାହାଣୀ
ଇଶପ କାହାଣୀ
ଗ୍ରୀସ୍‌ଦେଶର ପୁରାଣ କାହାଣୀ
ରୋମରାଜ୍ୟର ପୁରାଣକାହାଣୀ
ଆଲିବାବା କାହାଣୀ
ବିଚିତ୍ର ଦେଶରେ ଏଲିସ
ରୁସ୍ତମ କାହାଣୀ
କୃଷ୍ଣସୁନ୍ଦର

ଏହା ଛଡ଼ା ଆହୁରି ଅନେକ ଭଲ ବହି ଯାହା ସବୁ ଦେଶର ପାଠକଙ୍କୁ ସବୁବେଳେ ମୁଗ୍ଧ କରିଛି।

**ପ୍ରକାଶକ — ଗ୍ରନ୍ଥମନ୍ଦିର, ବିନୋଦବିହାରୀ, କଟକ-୨**

## ବିଶ୍ୱସାହିତ୍ୟ ଗ୍ରନ୍ଥମାଳା

ଶିହରଣ ଓ ରୋମାଞ୍ଚ ଦେଇପାରୁଥିବା କାହାଣୀ ବହି କିଶୋରପାଠକମାନଙ୍କୁ ବିମୋହିତ କରେ । ଓଡ଼ିଆ ପିଲାଙ୍କୁ ସେଭଳି ବହି ଯୋଗାଇଦେଇଛି ବିଶ୍ୱସାହିତ୍ୟ ଗ୍ରନ୍ଥମାଳାର ଶତାଧିକ ବହି । ସେମାନେ ଏଇ ବହିଗୁଡ଼ିକ ପଢ଼ି ଆନନ୍ଦ ପାଇଛନ୍ତି, ବିଶ୍ୱସାହିତ୍ୟ ସହ ପରିଚିତ ହୋଇଛନ୍ତି ଓ ବହି ପଢ଼ିବା ଅଭ୍ୟାସ ଲାଭକରିଛନ୍ତି ।

ସବୁ ପୁସ୍ତକମେଳା ଓ ଲାଇବ୍ରେରୀରେ ଛାତ୍ର-ଛାତ୍ରୀମାନେ ଖୋଜିଛନ୍ତି ବିଶ୍ୱସାହିତ୍ୟ ଗ୍ରନ୍ଥମାଳାର ରୋମାଞ୍ଚକର ବହି । ବହୁ ବିଶ୍ୱବିଖ୍ୟାତ ବହିର ସଂକ୍ଷିପ୍ତ ସାର ଏହା ଯୋଗାଇଦିଏ । ବହୁ ଶିକ୍ଷାବିତ୍ ଏ ବହିଗୁଡ଼ିକର ଉଚ୍ଚ ପ୍ରଶଂସା କରିଛନ୍ତି । ସେମାନଙ୍କ ଭିତରୁ ଦୁଇଜଣଙ୍କ ଅଭିମତ ହେଲା –

"Biswa Sahitya Series – deserves commendation by all lovers of Oriya. By providing reading material to the adolescent child, the Publishers have earned the gratitude of all parents." (Dr. Deviprasanna Pattanaik)

''ଏହି ବହିଗୁଡ଼ିକ କିଶୋରବୟସ୍କ ଛାତ୍ର-ଛାତ୍ରୀଙ୍କ ପକ୍ଷେ ଅତୀବ ଆକର୍ଷଣୀୟ ହୋଇପାରିଛି । ଏହା ସେମାନଙ୍କ କଳ୍ପନାକୁ ଉଦ୍ଦୀପ୍ତ କରିବା ସଂଗେ ସଂଗେ ସାହିତ୍ୟ ପ୍ରତି ଅନୁରାଗ ବଢ଼ାଇଛି ।'' (ଡ଼. ଜାନକୀ ବଲ୍ଲଭ ମହାନ୍ତି)

ସବୁ ପାଠକ ଓ ଅଭିଭାବକଙ୍କର ଏହାହିଁ ଅଭିମତ । ଜଣାଇଲେ ବହିଗୁଡ଼ିକର ପୂରା ତାଲିକା ପଠାଇଦେବୁ ।

 ଗ୍ରନ୍ଥମନ୍ଦିର, ବିନୋଦବିହାରୀ, କଟକ-୨